# କନ୍ଧ ସଂସ୍କୃତିରୁ
# ଅନାଲୋଚିତ ଅଧ୍ୟାୟ



ରଘୁନାଥ ରଥ

Digitized by PPRACHIN, SOA

କନ୍ଧ ସଂସ୍କୃତିର

# ଅନାଲୋଚିତ ଅଧ୍ୟାୟ

ରଘୁନାଥ ରଥ



ସଭା ସାହିତ୍ୟ ସଂସଦ, କୋରାପୁଟ
୧୯୯୩

Digitized by PPRACHIN, SOA

# କନ୍ଧ ସଂସ୍କୃତିର ଅନାଲୋଚିତ ଅଧ୍ୟାୟ

ରଚନା— **ରଘୁନାଥ ରଥ**, ପୁରୁଣା କଟକ, ଫୁଲବାଣୀ-୭୬୨୦୧୩
ପ୍ରକାଶକ – ସତ୍ତ୍ୱ ସାହିତ୍ୟ ସଂସଦ, କୋରାପୁଟ-୭୬୪୦୨୦, ପ୍ରକାଶନ କାଳ ବିଜୟା ଦଶମୀ-୧୯୯୩, ପ୍ରଚ୍ଛଦ- ଉମାକାନ୍ତ ମହାରଣା, ରବିନ୍ ମହାନନ୍ଦିଆ (ଜୟପୁର, କୋରାପୁଟ) ମୁଦ୍ରଣ- ଜେ. ଇ. ଏଲ. ସି. ପ୍ରେସ, କୋରାପୁଟ-୭୬୪୦୨୦, ମୂଲ୍ୟ କୋଡ଼ିଏ ଟଙ୍କା ମାତ୍ର ଟ ୨୦.୦୦ ।

ଲେଖକଙ୍କ ଦ୍ୱାରା ସର୍ବସ୍ୱତ୍ୱ ସଂରକ୍ଷିତ

Copy right reserved by the author

KANDHA SAMSKRUTIRA ANALOCHITA ADHAYA

Written by- Raghu Nath Rath, Puruna Katak, Phulbani-762013, Published by- Satta Sahitya Sansad, Koraput-764020 Time of Publication–Vijaya Dashami-1993, Cover by Umakanta Maharana & Rabin Mahandia (Jeypore, Koraput) Printed at J. E. L. C. Press, Koraput–764020, Price Rupees Twenty only, Rs 20/-

Digitized by PPRACHIN, SOA

ମୋ ନନା ସ୍ୱର୍ଗତଃ **କାଶିନାଥ ରଥ**

ଓ

ବୋଉ ସ୍ୱର୍ଗତା **ହେମଲତା ଦେବୀଙ୍କୁ**

ନନା ଓ ବୋଉ .

ଆଜିର ପବିତ୍ର ମହାଳୟା ତିଥିରେ ତମେ ଦୁହେଁ ବେଶି ବେଶି ମନେ ପଡ଼ୁଛ । ତମେ ଦୁହେଁ ଥିଲାବେଳେ ମୋ ପାଇଁ ତମର କିଛି ଅଦିଆ ରହିନ । ମୁଁ କିନ୍ତୁ କିଛିବି ଦେଇ ପାରିନ, ପୁଅ ହିସାବରେ ନିଜର ଦାୟିତ୍ୱ ମନେ କରି ଯାହା କିଛି ପାଇଛି, ଯାହା କିଛି କରିଛି ସବୁ ତୁମ ଦୁହିଁଙ୍କ ସ୍ନେହ ଶ୍ରଦ୍ଧା ଓ ଆଶୀର୍ବାଦକୁ ପାଥେୟ କରି । ମୁଁ ଜାଣେନା ତମେ ଦୁହେଁ ଏବେ କେଉଁଠି କେଉଁ ଅଦୃଶ୍ୟ ପୃଥିବୀରେ ? ତମର ସେଇ ଅଦୃଶ୍ୟ ଇଲାକାର ପରିବ୍ୟାପ୍ତ ହାତରେଁ ଏହାକୁ ସମର୍ପି ଦେଉଛି । ଶ୍ରଦ୍ଧାରେ ଗ୍ରହଣ କରିବ ।

ରଘୁନାଥ

Digitized by PPRACHIN, SOA

# ଅଭିମତ

"ଫୁଲବାଣୀ" ନାମ ଉଚ୍ଚାରଣ ମାତ୍ରେଇ ଦୁଇଟି କଥା ସ୍ୱତଃ ମନରେ ଜାଗରିତ ହୋଇଥାଏ । ପାହାଡ଼, ଜଙ୍ଗଲ ଘେରା ମାଳ ଅଞ୍ଚଳରେ 'କୁଇ' ଭାଷାଭାଷୀ 'କନ୍ଧ' ସମ୍ପ୍ରଦାୟର ଜନବସତି । ନିଅଗୋଟି ନାଲ୍କୁ ଏହାକୁ ଘେରି ରହିଥିଲେହେଁ ପ୍ରାକୃତିକ ଶୋଭା ଦୃଷ୍ଟିରୁ ଅନନ୍ୟା ହୋଇଥିଲେହେଁ, ଶତକଡ଼ା ୭୧ ଭାଗରୁ ଅଧିକ ଅଧିବାସୀ 'ଅନ୍ଧାରୀ' ହୋଇଥିଲେହେଁ "ଅବହେଳିତ" ଶବ୍ଦଟି ଭାବ-ଅଭାବ ମଧ୍ୟରୁ ଅହେତୁକଭାବେ ଏଥିସହିତ ଯୋଡ଼ି ହୋଇଯାଇଥାଏ ।

ଅଥଚ ଏଠାର ପ୍ରବାଦବାଣୀ, ଓଷାବ୍ରତ, ନୃତ୍ୟଗୀତ ଯେଉଁଭଳି କର୍ଣ୍ଣ ପ୍ରୀତିପଦ, ସେଇଭଳି ପାରମ୍ପରିକ ମୌଖିକ ସାହିତ୍ୟର ଧାରା ମଧ୍ୟ ଚିତ୍ତ-ଉଲ୍ଲାସକାରୀ । ଏକ ଐତିହ୍ୟ ସମ୍ପନ୍ନ ଜନଜାତି "କନ୍ଧ" ସମାଜ ଓ ସଂସ୍କୃତିକୁ ଭିତ୍ତି କରି ଅନେକ ଗବେଷଣାତ୍ମକ ରଚନା ପ୍ରକାଶିତ ହୋଇ ସାରିଛି । ଏପରିକି ବିଦେଶାଗତ କେତେକ ଗବେଷକ ମଧ୍ୟ ଏଥିରୁ ବାଦ୍ ପଡ଼ି ନାହାନ୍ତି ।

ଏ ପରିପ୍ରେକ୍ଷୀରେ ଏହି ପୁସ୍ତକ "କନ୍ଧ ସଂସ୍କୃତିର ଅନାଲୋଚିତ ଅଧ୍ୟାୟ" ଏକ ନୂତନ ସ୍ୱାକ୍ଷର ବହନ କରିଥିବାର ମନେ ହୋଇଥାଏ । ହୁଏତ ଏଇଥିପାଇଁ ଯେ, ଲେଖକଙ୍କର ଅଧ୍ୟୟନ, ଅନୁଶୀଳନ, ଦୀର୍ଘକାଳ ରହଣୀ ତଥା ଗବେଷଣାତ୍ମକ ମନୋଭାବ ।

ବୃତ୍ତି ଦୃଷ୍ଟିରୁ ଅଧ୍ୟୟନ ସହିତ କୌଣସି ସମ୍ପର୍କ ନ ଥିଲେହେଁ, ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛଳ ହୋଇ ନ ଥିଲେହେଁ — ଫୁଲବାଣୀରେ ମୋର ଦୀର୍ଘ ରହଣୀ ସମୟରୁ ଲେଖକଙ୍କର ଅଧ୍ୟୟନ ପ୍ରତି ଅନୁରାଗ ତଥା ଗବେଷଣା ପ୍ରତି ଅନୁରକ୍ତି ସହିତ ମୁଁ ପରିଚିତ । ଏଥିପୂର୍ବରୁ କେତେକ ପ୍ରବନ୍ଧ ପ୍ରକାଶିତ ହୋଇଥିଲେହେଁ — ଏହି ପୁସ୍ତକରେ ସନ୍ନିବେଶିତ ଅନେକ ବିଷୟ ଯଥାର୍ଥରେ ଅନାଲୋଚିତ ହୋଇଥିବାର ମନେ ହୋଇଥାଏ ।

ମୋର ନିଜସ୍ୱ ମତାମତକୁ, ପାଠକମାନଙ୍କ ଉପରେ ଲଦିଦେବା ଅପେକ୍ଷା, ପାଠକମାନଙ୍କ ନିର୍ଭୀକ ନିଜସ୍ୱ ମତାମତ ପାଇଁ ଗଭୀର ଆଶା ରଖୁଛି । ଶେଷରେ, ଲେଖକଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରି ରହୁଛି ।

ଡ଼ଃ. ଶ୍ରୀଶ ପଟେଲ
ପ୍ରାଧ୍ୟାପକ, ନୃତତ୍ତ୍ୱ ବିଭାଗ
ବି.ଜେ.ବି. କଲେଜ, ଭୁବନେଶ୍ୱର-୧୪

ଭୁବନେଶ୍ୱର
୭ ଅକ୍ଟୋବର ୧୯୯୩

Digitized by PPRACHIN, SOA

# ଅଭିମତ

ଶ୍ରୀଯୁକ୍ତ ରଘୁନାଥ ରଥଙ୍କ ଲିଖିତ କନ୍ଧ ସଂସ୍କୃତିର ଅନାଲୋଚିତ ଅଧ୍ୟାୟ ପୁସ୍ତକଟି ପାଠକଲି । ଏଥିରେ ସେ କନ୍ଧମାନଙ୍କ ସମ୍ପର୍କରେ ଠିକଣଖି ବିବରଣୀ ଦେଇଛନ୍ତି । ପୂର୍ବରୁ ପ୍ରକାଶ ପାଇଥିବା ବହୁ ଲେଖକଙ୍କ ଲେଖାରୁ ସେ ଉପାଦାନ ସଂଗ୍ରହ କରିଥିଲେ ମଧ୍ୟ ପ୍ରତ୍ୟକ୍ଷ ଭାବରେ ସେ କନ୍ଧମାନଙ୍କ ସଂସ୍ପର୍ଶରେ ଆସି ଏବଂ ସେମାନଙ୍କ ଗହଣରେ ଅଧିକ ଦିନ କଟାଇ ଯେଉଁ ଉପାଦାନ ଗୁଡ଼ିକ ଉପଲବ୍ଧ କରିଛନ୍ତି ସେ ଗୁଡ଼ିକ ପୁସ୍ତକର ମର୍ଯ୍ୟାଦା ବୃଦ୍ଧି କରିବାରେ ସହାୟକ ହୋଇଛି । ବିଭିନ୍ନ ଦୃଷ୍ଟି କୋଣରୁ କନ୍ଧ ସଂସ୍କୃତିର ପ୍ରଖ୍ୟାପନ ଅଦ୍ୟାବଧି ହୋଇପାରି ନାହିଁ । ସମାଜତାତ୍ତ୍ୱିକ ଦିଗରୁ ସେ ଦିଗରେ ବହୁ କାର୍ଯ୍ୟ କରାଯିବା ଉଚିତ । ଶ୍ରୀଯୁକ୍ତ ରଥ ଏ କାର୍ଯ୍ୟରେ ଆଗ୍ରହ ପ୍ରକାଶ କରି ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ଋଦ୍ଧିମନ୍ତ କରିଥିବାରୁ ଆମ୍ଭମାନଙ୍କର ଧନ୍ୟବାଦାର୍ହ । ଏହା ମଧ୍ୟ ଓଡ଼ିଶାର ଏକ ଅଜ୍ଞାତ ସାଂସ୍କୃତିକ ପରଂପରା ସମ୍ପର୍କରେ ଆଲୋକପାତ କରିପାରିବ । ବିଶେଷତଃ ଓଡ଼ିଆ ଭାଷାରେ ଓଡ଼ିଶାର ଆଦିବାସୀ ସଂସ୍କୃତି ଉପରେ ବହୁ ଅଳ୍ପ ପୁସ୍ତକ ପ୍ରକାଶ ପାଇଛି । ଓଡ଼ିଶାର ଲୋକ ସଂଖ୍ୟାର ଏକଚତୁର୍ଥାଂଶ ଲୋକଙ୍କ ବିଷୟରେ ଉପସ୍ଥାପନା ଅତି ସୀମିତ ଥିବା ବେଳେ ରଘୁବାବୁଙ୍କ ପରି ବହୁ ଲେଖକ ସେ ଦିଗରେ ପ୍ରୟାସ କରିବା ନିତାନ୍ତ ଆବଶ୍ୟକ । ଆଧୁନିକ ପରିବର୍ତ୍ତନର ପ୍ରଭାବରେ ସେସବୁ ବିଲୁପ୍ତ ହେବା ପୂର୍ବରୁ ସେ ଗୁଡ଼ିକର ସଂରକ୍ଷଣ ଦିଗରେ ଯେ କୌଣସି ଉଦ୍ୟମ ପ୍ରଶଂସନୀୟ ।

ମୁଁ ରଘୁବାବୁଙ୍କୁ ଅନେକ ଦିନରୁ ଜାଣେ । ସେ ଉଦ୍ୟମୀ, ଅନୁସନ୍ଧିତ୍ସୁ, ପରିଶ୍ରମୀ ଓ ସ୍ନେହୀ ଅଟନ୍ତି । ଶିକ୍ଷା ଦିଗରେ ତାଙ୍କର ଗଭୀର ଅନୁରାଗ ମଧ୍ୟ ରହିଛି । ମୁଁ ତାଙ୍କଠାରୁ ଅଧିକ ସଫଳ ପ୍ରୟାସର କାମନା କରୁଛି ।

୧୪ ଅକ୍ଟୋବର ୧୯୯୩
ଭୁବନେଶ୍ୱର

**ଡଃ. ରବି ନାରାୟଣ ଦାଶ**
ଅଧ୍ୟକ୍ଷ, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର

Digitized by PPRACHIN, SOA

# ଆମ ତରଫରୁ ପଦେ

ଯେବେଠୁ ମଣିଷ ସହବାସ ସୂତ୍ରରେ ବାନ୍ଧିବା ଶିଖିଛି, ସେବେଠୁ ସେ ନିଜସ୍ୱ ସ୍ୱଭାବକୁ ସିଦ୍ଧ କରି ସଭ୍ୟତା ଗଢ଼ିଛି । ସମୟ ପ୍ରଭାବରେ ମଣିଷର ରୁଚି ବଦଳିଛି ଓ ସେ ନିଜସ୍ୱ ବିକଶିତ ପ୍ରଜ୍ଞାକୁ ନେଇ ନିଜକୁ ସଂସ୍କାର କରିଛି ଥରକୁ ଥର । ଏଇ ପରିବର୍ତ୍ତିତ ସଭ୍ୟତାର ସଂସ୍କାର ସମ୍ପନ୍ନ ଆତ୍ମାଟି ସମୟକ୍ରମେ ପରିଚିତ ହୋଇଛି ସଂସ୍କୃତି ନାମରେ । ଏହି ସଭ୍ୟତା ଓ ସଂସ୍କୃତିର ଆଦି ସ୍ରଷ୍ଟାମାନଙ୍କୁହିଁ ଆମେ ଆଦିବାସୀ ବା ଆଦିମ ଅଧିବାସୀ କହିଥାଉ ।

ସମୟକ୍ରମେ ଏହି ମୂଳ ଆଦିବାସୀ ଗୋଷ୍ଠୀରୁ ସୃଷ୍ଟି ହୋଇଛି ଅନେକ ଗୋଷ୍ଠୀ ଉପଗୋଷ୍ଠୀ ଓ ଅନେକ ସଭ୍ୟତା. ଅନେକ ସଂସ୍କୃତି ପରି-ବେଶ ଓ ପରିସ୍ଥିତିକୁ ନେଇ କିଏ ଅଧିକ ଉନ୍ନତ ରୁଚି ସମ୍ପନ୍ନ ହୋଇଛିତ ଆଉ କିଏ ନିଜ ପ୍ରଜ୍ଞାର ପ୍ରସାର ଘଟାଇ ଅନେକ ସ୍ରୋତର ସମ୍ମିଶ୍ରଣରେ ପ୍ରସାରିତ ହୋଇ ଅନ୍ୟ କୂଳାଡ଼ି ବଢ଼େଇ ଆଗୁଆ ମଣିଷ ଗୋଷ୍ଠୀ ପାଲଟି ଯାଇଛି । ଆଉ କିଏ ନିଜକୁ ପ୍ରସାରିତ କରିବାର ସୁଯୋଗ ନପାଇ ଏବେବି ରହିଯାଇଛି ସେଇ ପ୍ରାଗ୍ ଐତିହାସିକ ଜୀବନ ଜୀଇଁବା ଧାରା ଭିତରେ ଏମାନଙ୍କୁ ଆମେ ଆର୍ଯ୍ୟ, ଦ୍ରାବିଡ଼ ତଥା ଆଦିବାସୀଭାବରେ ଭାଗ ଭାଗ କରି ଚିହ୍ନିଛୁ । ଗୋଟାଏ ଉତ୍ସରୁ ଅନେକ ସ୍ରୋତ । କିଏ ନଈ, କିଏ ସମୁଦ୍ରତ ଆଉ କିଏ ନାଳଟିଏ ହୋଇ ରହିଯାଇଛି ପୂର୍ବବତ୍ । ସବୁ ସୁଅର ଯେଉଁଠି ମିଳନ ଘଟିଛି ସେଇଠାକୁ ଆମେ ମହାସାଗର କହିଛୁ । ମହାସାଗର ଜଳରୁ ନଈ, ନାଳ, ସମୁଦ୍ରର ସ୍ୱତନ୍ତ୍ର ସତ୍ତା ଖୋଜି ପାଇବା ଏତେଟା ସହଜ ନୁହେଁ । ସେମାନଙ୍କୁ ଚିହ୍ନିବାକୁ ହେଲେ ଆମକୁ ମୁହାଣ ମୁହଁରୁ ଏମାନଙ୍କ ଗତି ପଥର ସନ୍ଧାନ ନେଇ ମୂଳ ଉତ୍ସ ପାଖରେ ପହଞ୍ଚିବାକୁ ହେବ । ସେଇଠି ବାରି ହେବ ସେମାନଙ୍କ ସ୍ୱତନ୍ତ୍ର ସତ୍ତା ଓ ତା ଜଳରେ ଥିବା ସ୍ୱାଦର ଭିନ୍ନତା । ଏଇ ସତ୍ୟଟିକୁ ଉପଲବ୍ଧି କରିଛନ୍ତି 'କନ୍ଧ ସଂସ୍କୃତିର ଅନାଲୋଚିତ ଅଧ୍ୟାୟ' କେତୋଟିକୁ ଆଲୋଚନା ପରିସରକୁ ଆଣିଥିବା ଆଲୋଚକ ବନ୍ଧୁ ଶ୍ରୀଯୁକ୍ତ ରଘୁନାଥ ରଥ । ଶ୍ରୀଯୁକ୍ତ ରଥଙ୍କ ଆଲୋଚନା ପ୍ରସଙ୍ଗକୁ ନେଇ ଏପରି କହିବାର ତାତ୍ପର୍ଯ୍ୟ ହେଉଛି ବ୍ୟକ୍ତି ତଥା ଗୋଷ୍ଠୀର କ୍ରିୟା ପ୍ରକ୍ରିୟା, ଚିନ୍ତା

Digitized by PPRACHIN, SOA

ତଥା ଚେତନାର ଗୋଟାଏ ପ୍ରଭବ ନିଜସ୍ୱ ପରିଧି ଭିତରେ ଥାଏ । ଏମାନଙ୍କ ନୈତିକ ପ୍ରେରଣାର ସ୍ୱାତନ୍ତ୍ର୍ୟ ତୁଏତ ସାମଗ୍ରିକ ଭାବେ ବୌଦ୍ଧିକ ସ୍ଫୁରଣରେ ସହାୟକ ହୋଇଥାଇପାରେ । ମାତ୍ର ମୂଳ ଉତ୍ସରୁ ଉତ୍ପନ୍ନ ନାଳଟିଏ ନଈ ବା ସମୁଦ୍ର ପାଲଟି ଚାଲେବେଳେ ଆଉ କେଉଁଠି କେମିତି ନାଳଟିଏ ନାଳ- ଟିଏହିଁ ହୋଇ ରହିଯାଏ କାହିଁକି ? ସିଏ କ'ଣ ଅନୁମୂଳ ପରିବେଶଟିଏ ପାଇଥିଲେ ନଈଟିଏ କି ସମୁଦ୍ରଟିଏ ପାଲଟି ଯାଇ ନଥାନ୍ତା କି ? ତେବେ ସେ ଯାହା ହେଉନା କାହିଁକି ନାଳଟିର ମଧ୍ୟ ଉପଯୋଗିତା ତ ରହିଛି । ଏ ନାଳଟି ତୁଏତ ଅନ୍ୟ କେଉଁ ଏକ ବୃହତ୍ ନଈ କି ସମୁଦ୍ରର ସ୍ରଷ୍ଟା ବି ହୋଇଥାଇପାରେ । ଏଣୁ ଏହାର ମୂଳ ଉତ୍ସକୁ ଅନୁସନ୍ଧାନ କରିବା, ବା ଏହାର ଗତିପଥକୁ ନିୟନ୍ତ୍ରଣ ମୁକ୍ତ କରି ଏଇ ଶ୍ରେଷ୍ଠ ନାଳର ଧାରାଟିକୁ ମଧ୍ୟ ସମୟୋପଯୋଗୀ କରି ନଈଭଳି ଏହାର ସ୍ରୋତକୁ ମହାସାଗରାଭିମୁଖୀ କରେଇବାର ଆବଶ୍ୟକତା ରହିଛି ।

ଏହି ପରିପ୍ରେକ୍ଷୀରେ ବିଚାର କରାଯାଇ ପାରେ ଆମ ଓଡ଼ିଶାର ବିଭିନ୍ନ ଆଦିବାସୀ ଜନଗୋଷ୍ଠୀଙ୍କ ସମ୍ପର୍କରେ । ଏଠାରେ ବାଷଠିଟି ଗୋଷ୍ଠୀର ଆଦିବାସୀ ଜନଜାତି ବସବାସ କରନ୍ତି । ସମ୍ପ୍ରତି ଏମାନଙ୍କ ସଂଖ୍ୟା ସମୁଦାୟ ଜନ ସଂଖ୍ୟାର ପ୍ରାୟ ଏକ ଚତୁର୍ଥାଂଶ । ଏମାନଙ୍କର ନିଜସ୍ୱ ସ୍ୱତଃସ୍ୱତନ୍ତ୍ର ସଂସ୍କୃତି ରହିଛି । ଏମାନଙ୍କ ସଂସ୍କୃତିର ବିଶେଷତ୍ୱ ତଥା ଅବଦାନ ଓ ଅଣଆଦିବାସୀ ବା ଆମ ଓଡ଼ିଆ ସଂସ୍କୃତି ସହ ସମନ୍ୱୟକୁ ବିଚାର କରାଗଲାବେଳେ ଦେଖାଯାଏ ଏହାର ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଭାବ ତଥା ଭୂମିକା ଏ ରାଜ୍ୟର ଉନ୍ନତିସାଧନ କ୍ଷେତ୍ରରେ ରହିଛି । ଅତୀତ ପ୍ରତି ଦୃଷ୍ଟି ନିକ୍ଷେପ କଲେ ଦେଖାଯାଏ ଏମାନେହିଁ ଏହି ଅଞ୍ଚଳୀୟ ସଂସ୍କୃତିର ମୂଳପିଣ୍ଡ । ଅଥଚ ଏମାନଙ୍କ ସାମାଜିକ, ଅର୍ଥନୈତିକ ଓ ସାଂସ୍କୃତିକ ସ୍ଥିତିକୁ ବିଚାରକୁ ନେଇ ଏ ସମ୍ପର୍କରେ ଐତିହାସିକ ତଥା ନୃତାତ୍ତ୍ୱିକ ଦୃଷ୍ଟି କୋଣରୁ ବିଶେଷ ଆଲୋଚନା ହୋଇ ପାରି ନାହିଁ । ଯାହାକିଛି ବା କାର୍ଯ୍ୟ ହୋଇଛି ତାହା କିଛି ନୁହେଁ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଇ ଦୃଷ୍ଟି କୋଣରୁ ଶ୍ରୀଯୁକ୍ତ ରଘୁନାଥ ରଥ କନ୍ଧ ଆଦିବାସୀ ଜନ ଗୋଷ୍ଠୀର ସାଂସ୍କୃତିକ ପରଂପରା, ସାମାଜିକ ସମ୍ପର୍କ, ବୈବାହିକ ସମ୍ପର୍କ, ସାମାଜିକ ଶୃଙ୍ଖଳା ଆଦିକୁ ନେଇ ଯେଉଁ କେତୋଟି ଉପାଦେୟ ଆଲୋଚନା ନିଜସ୍ୱ ଅନୁଭୂତି ଓ ଗବେ- ଷଣାମୂଳକ ତଥ୍ୟାବଳୀକୁ ନେଇ ପ୍ରସ୍ତୁତ କରିଛନ୍ତି ଏହାକୁ ସେ ପୁସ୍ତକଟିଏ

Digitized by PPRACHIN, SOA

ଆକାରରେ ପ୍ରକାଶ କରିବାର ସୁଯୋଗ ପାଇ ନଥିବାରୁ ତାଙ୍କ ମନର କ୍ଷୋଭ ବନ୍ଧୁଭାବରେ ମୋ ନିକଟରେ ପ୍ରକାଶ କରିଥିଲେ । ଏପରି କିଛି ଉପାଦେୟ ଆଲୋଚନାର ସାମାଜିକ ମୂଲ୍ୟ ଓ ଆବଶ୍ୟକତା ସଂପ୍ରର୍କ ସମାଜ ପାଇଁ ରହିଥିବା ଅନୁଭବ କରି ମୁଁ ସ୍ୱଳ୍ପ ପରିବାରର ବନ୍ଧୁମାନଙ୍କୁ ଆମ ଅନୁଷ୍ଠାନ ତରଫରୁ ସହଯୋଗ ଭିତ୍ତିକ ପ୍ରଚେଷ୍ଟାରେ ଉକ୍ତ ପୁସ୍ତକଟିର ପ୍ରକାଶନ ଦାୟିତ୍ୱ ନିଆଯିବାକୁ ପରାମର୍ଶ ଦେଇଥିଲି । ଆଲୋଚନାକ୍ରମେ କିଛିଟା ଆର୍ଥିକ ସମସ୍ୟା ସଂପର୍କିତ କଥା ଉଠିଥିଲା । ଏହାକୁ ଏଡ଼ାଇ ଯିବାକୁ ଆମେ ଶ୍ରୀଯୁକ୍ତ ରଥଙ୍କଠାରୁ ମଧ୍ୟ କିଛିଟା ଆର୍ଥିକ ସହଯୋଗ ଆଶା କଲୁ ଓ ସେ ସାଦରେ ଆମ ପ୍ରସ୍ତାବ ଗ୍ରହଣ କରି ନେଲେ ।

ପରିଶେଷରେ ତାଙ୍କରି କୋରାପୁଟ ରହଣି ଅବସରରେ ଏଇ ପୁସ୍ତକଟି ପ୍ରକାଶ କରିବା ପାଇଁ ସ୍ଥିର କରାଯାଇ ଅନୁଷ୍ଠାନ ତରଫରୁ ମୋ ଉପରେ ଅନ୍ୟାନ୍ୟ ସମସ୍ତ ଦାୟିତ୍ୱ ନ୍ୟସ୍ତ କରାଗଲା । ଯାହାହେଉ ବନ୍ଧୁମାନଙ୍କ ସହ-ଯୋଗ ଯେ.ଇ.ଏଲ୍.ସି ମୁଦ୍ରଣ ପ୍ରତିଷ୍ଠାନର କର୍ମକର୍ତ୍ତାଙ୍କ କାର୍ଯ୍ୟ ଦକ୍ଷତା ଯୋଗୁଁ ଏକ ନିର୍ଦ୍ଧାରିତ ସମୟରେ ପୁସ୍ତକଟି ପ୍ରକାଶ ପାଇ ପାରିଥିବାରୁ ମୁଁ ଏଇ ଅବସରରେ ସମସ୍ତଙ୍କୁ ଅନୁଷ୍ଠାନ ତରଫରୁ ସାଧୁବାଦ ଜ୍ଞାପନ କରିବା ସଙ୍ଗେ ସଙ୍ଗେ ପୁସ୍ତକଟିର ଉପାଦେୟତା ଯୋଗୁଁ ଏହା ପାଠକ ମହଲରେ ବିଶେଷଭାବେ ଆଦୃତ ହେବ ବୋଲି ଆଶା ଓ ବିଶ୍ୱାସ ରଖୁଛି ତଥା ଶ୍ରୀଯୁକ୍ତ ରଥଙ୍କ ଠାରୁ ଆଗାମୀ ଦିନମାନଙ୍କରେ ଆହୁରି ଅନେକ କିଛି ନୂତନ ତଥ୍ୟ ସମ୍ବଳିତ ଗବେଷଣା ଧର୍ମୀ ସୃଷ୍ଟି ସମ୍ଭାରର ଆଶା ରଖୁଛି ।

କୋରାପୁଟ
ତା - ୧୭ - ଅକ୍ଟୋବର - ୧୯୯୩

**ଶ୍ରୀ ଜଳଧର ସ୍ୱାଇଁ**
ସଭାପତି - ସତ୍ୟ ସାହିତ୍ୟ ସଂସଦ
କୋରାପୁଟ - ୭୬୪୦୨୦

Digitized by PPRACHIN, SOA

# ପ୍ରଥମ ପାହାଚ

ସଂସ୍କୃତି ଏକ ବହୁ ବ୍ୟାପକ ଶବ୍ଦ । ଏହାର ଏକ ଶାଶ୍ବତ ମୂଲ୍ୟବୋଧ ରହିଛି । ଏଣୁ କୌଣସି ସଂସ୍କୃତି ସଂପର୍କରେ ଜ୍ଞାତ ହେବାକୁ ହେଲେ ଏହାର ପ୍ରକୃତ ତଥ୍ୟାବଳୀକୁ ତଥା ସତ୍ୟତାକୁ ଉଦ୍ଘାଟିତ କରିବାକୁହିଁ ହେବ ଏବଂ ଏଥିପାଇଁ ନିଷ୍ଠାର ସହିତ ଅନୁଧ୍ୟାନ କରିବା ନିମନ୍ତେ ସମାଜର ଗଭୀରତମ ପ୍ରଦେଶକୁ ପ୍ରବେଶ କରି ଏହାର ଶାଶ୍ବତ ମୂଲ୍ୟବୋଧ ସହିତ ପରିଚିତ ହେବାକୁହିଁ ପଡ଼ିବ । ଆମ ରାଜ୍ୟରେ ସଂପ୍ରତି ପରିବର୍ତ୍ତନର ସ୍ରୋତରେ ଆଦିମତମ ମଣିଷ ଗୋଷ୍ଠୀ ବା ଆଦିବାସୀ ଜନଗୋଷ୍ଠୀର ପ୍ରାଚୀନ ସଂସ୍କୃତି ତଥା ପରମ୍ପରା କ୍ରମଶଃ ବିଲୟ ପ୍ରାପ୍ତ ହୋଇଆସୁଥିବା ବେଳେ କନ୍ଧ ମାଳର କନ୍ଧ ସଂସ୍କୃତି ସଂପର୍କରେ କିଛି ଜାଣିବାର ସୁଯୋଗ ମୋତେ ମିଳିଥିଲି ଏବଂ ଏହା ମୋ ଭିତରେ ଏହି ସଂସ୍କୃତିର ବାସ୍ତବ ତଥ୍ୟାବଳୀ ଅନୁସନ୍ଧାନ ପାଇଁ ଆଗ୍ରହ ସୃଷ୍ଟି କରିଥିଲା । ଫଳତଃ କନ୍ଧ ସମାଜର ଗଭୀରତମ ପ୍ରଦେଶକୁ ପ୍ରବେଶ କରି ମୁଁ କିଛି ତଥ୍ୟ ସଂଗ୍ରହ କରିବାରେ ସକ୍ଷମ ହୋଇ ପାରିଛି ଏବଂ ସେହି ତଥ୍ୟାବଳୀକୁ କେତୋଟି ଅଧ୍ୟାୟରେ ଉକ୍ତ ପୁସ୍ତକରେ ସନ୍ନିବେଶିତ କରିଛି । ମୋର ବିଶ୍ବାସ ଏହା ଅଧୁନା ପରିବର୍ତ୍ତନ ସ୍ରୋତରେ ପ୍ରଭାବିତ କନ୍ଧ ସମାଜକୁ ସେମାନଙ୍କ ସଂସ୍କୃତିର ବିଭିନ୍ନ ଦିଗ ସଂପର୍କରେ ଯେତିକି ସଚେତନ କରିବ, ସେହି ପରିମାଣରେ ପାଠକ ତଥା ଗବେଷକମାନଙ୍କୁ ମଧ୍ୟ ଆଗ୍ରହାନ୍ୱିତ କରି ପାରିବ ।

କନ୍ଧ ସମାଜ ଓ ସଂସ୍କୃତି ସଂପର୍କରେ ଏଯାବତ୍ ଅନେକ ଗବେଷଣା କରାଯାଇଥିଲେବି ଉକ୍ତ ପୁସ୍ତକରେ ସଂକଳିତ ଅଧ୍ୟାୟ ଗୁଡ଼ିକ ପ୍ରାୟତଃ ଅନାଲୋଚିତ ରହିଯାଇଛି । ଏକ୍ଷେତ୍ରରେ ଏହି ଅନାଲୋଚିତ ଦିଗ ଗୁଡ଼ିକୁ ଆଲୋଚନା ପରିସର ମଧ୍ୟକୁ ଆଣିବା ପାଇଁ ମୁଁ ଯେଉଁ ଚେଷ୍ଟା କରିଛି ଏବଂ ଯେତିକି ତଥ୍ୟ ପାଇଛି ତାହା ସର୍ବଶେଷ ନ ହୋଇପାରେ, ଏ ସଂସ୍କୃତି ସଂପର୍କରେ ଆହୁରି ଅନେକ କିଛି ଜାଣିବାକୁ ବାକି ରହିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଗୋଟିଏ ସଂସ୍କୃତି ସଂପର୍କରେ ସଂପୂର୍ଣ୍ଣ ଗବେଷଣା ପାଇଁ ଜଣେ ଗବେଷକର ସମସ୍ତ ଜୀବନକାଳ ପର୍ଯ୍ୟାପ୍ତ ନୁହେଁ ବୋଲି ମୋର ବିଶ୍ବାସ ।

Digitized by PPRACHIN, SOA

ଏଇ ପୁସ୍ତିକରେ ସନ୍ନିବେଶିତ ଅଧ୍ୟାୟ ଗୁଡ଼ିକ ମୋର ଗବେଷଣା କ୍ଷେତ୍ର ଫୁଲବାଣୀ ଜିଲ୍ଲାର, ଫୁଲବାଣୀ, ଟିକାବାଲି, ଚକାପାଦ ଓ ପୁ: ଉଦୟଗିରି ପଞ୍ଚାୟତ ସମିତି ଅଞ୍ଚଳ ମାନଙ୍କରେ ବସବାସ କରୁଥିବା କନ୍ଧ ଜନଜାତିର ପ୍ରତିଫଳନ ହୋଇଥିଲେ ମଧ୍ୟ ତାହା ମଧ୍ୟଦେଇ ସାମଗ୍ରିକ-ଭାବେ ଓଡ଼ିଶାର କନ୍ଧ ଜନଜାତିର ସଂସ୍କୃତିକୁ ଉପଲବ୍ଧି କରାଯାଇ ପାରିବ ବୋଲି ଆଶା ଓ ବିଶ୍ୱାସରେ ହିଁ ଏ ପୁସ୍ତକଟିର ପରିକଳ୍ପନା କରାଯାଇଛି । ବ୍ୟୟ ବହୁଳତାକୁ ଏଡ଼ାଇବାକୁ ଯାଇ, ଗବେଷଣା କାଳରେ ସଂଗୃହୀତ ସମସ୍ତ ତଥ୍ୟଭିତ୍ତିକ ପ୍ରସ୍ତୁତ ଅଧ୍ୟାୟ ଗୁଡ଼ିକ ଉକ୍ତ ପୁସ୍ତକରେ ସନ୍ନିବେଶିତ କରାଯାଇ ପାରୁନାହିଁ । ତେଣୁ ଅବଶିଷ୍ଟ ଅନାଲୋଚିତ ଅଧ୍ୟାୟ ଗୁଡ଼ିକ ଭବିଷ୍ୟତରେ ସୁଯୋଗ ମିଳିଲେ ପ୍ରକାଶ କରିବାର ଆଶା ଓ ବିଶ୍ୱାସ ରଖୁଛି ।

ଉକ୍ତ ପୁସ୍ତକରେ ସ୍ଥାନ ପାଉଥିବା ବିଷୟ ଗୁଡ଼ିକ ମଧ୍ୟରୁ କେତେକ ପୂର୍ବରୁ ଅରଣ୍ୟ, ପ୍ରତିଭବାର୍ତ୍ତା, ବାର୍ତ୍ତାଜର୍ନି, ପ୍ରଜାତନ୍ତ୍ର ପ୍ରଭୃତି ଇତ୍ୟାଦି ପତ୍ର ପତ୍ରିକାରେ ପ୍ରକାଶ ପାଇ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରିଥିବାରୁ ଏଇ ଅବସରରେ ମୁଁ ସେହି ସବୁ ପତ୍ର ପତ୍ରିକାର ସଂପାଦକ ମାନଙ୍କୁ କୃତଜ୍ଞତା ଜଣାଉଛି ।

ଏଇ ପୁସ୍ତକ ପ୍ରକାଶନ ଅବସରରେ ମୁଁ ଅନ୍ୟ ଯେଉଁମାନଙ୍କ ନିକଟରେ କୃତଜ୍ଞ ସେମାନଙ୍କ ମଧ୍ୟରୁ ଅନ୍ୟତମ ହେଉଛନ୍ତି ନିଜ ସଂସ୍କୃତି ସଂପର୍କରେ ମୋତେ ବହୁ ତଥ୍ୟ ଯୋଗାଇଥିବା ଶିକ୍ଷକ ଶ୍ରୀଯୁକ୍ତ ଉପେନ୍ଦ୍ର କହଁର, ଟିକାବାଲି ନିକଟସ୍ଥ ଉପରଖୋଲ ଗ୍ରାମ ନିବାସୀ । ଶ୍ରୀଯୁକ୍ତ କହଁର ନିଜ ସଂସ୍କୃତିର ବହୁ ପ୍ରଥା ଓ ପରମ୍ପରା କ୍ରମେ ଲୁପ୍ତପ୍ରାପ୍ତ ହୋଇ ଆସୁଥିବା ଲକ୍ଷ୍ୟ କରି ତଥା ସଂସ୍କୃତିରେ ଏଯାବତ୍ ପ୍ରଚଳିତ ଥିବା କେତେକ ଅନ୍ଧ ବିଶ୍ୱାସର ଦୂରୀକରଣ ପାଇଁ ପ୍ରବଳ ଆଗ୍ରହ ଥିବାରୁ ସେ ବହୁ ବିଲମ୍ବିତ ରାତି ପର୍ଯ୍ୟନ୍ତ ମୋ ସହିତ ଆଲୋଚନାରତ ରହି ନିଜ ସଂସ୍କୃତି ସଂପର୍କରେ ବହୁ ମୂଲ୍ୟବାନ ତଥ୍ୟ ଓ ସୂଚନା ପ୍ରଦାନ କରିଥିବାରୁ ମୁଁ ତାଙ୍କ ନିକଟରେ ଋଣୀ ରହିଛି ।

ଉକ୍ତ ପ୍ରବନ୍ଧ ଗୁଡ଼ିକ ଯେ କେବେ ପୁସ୍ତକ ଆକାରରେ ପ୍ରକାଶ ପାଇବ ଏ ସଂପର୍କରେ ମୁଁ ଚିନ୍ତା କରିବାର ସୁଯୋଗ ପାଇ ନଥିଲି । ଅଥଚ କୋରାପୁଟ ସହରକୁ ସରକାରୀ କାର୍ଯ୍ୟରେ ଆସିଥିବା ଅବସରରେ ଏ ସଂପର୍କିତ କେତୋଟି ପ୍ରବନ୍ଧ ଅବସର ସମୟରେ ଆଲୋଚନା ପାଇଁ ମୋର ଅନ୍ୟତମ କବି ବନ୍ଧୁ ତଥା ସର୍ବ ସାହିତ୍ୟ ସଂସଦର ସଭାପତି ଶ୍ରୀଯୁକ୍ତ ଜଳଧର ସ୍ୱାଇଁଙ୍କ

Digitized by PPRACHIN, SOA

ଦୃଷ୍ଟିକୁ ଆଣିଥିଲ । ଆଗ୍ରହର ସହିତ ସେ ପ୍ରବନ୍ଧ ଗୁଡିକ ପଢି ତ୍ରୁଟି ସୁଧାରିବା ସହ ଉପଯୁକ୍ତ ପରାମର୍ଶ ଦେଇ ଏହାକୁ ପୁସ୍ତକ ପ୍ରକାଶ କରିବା ଉପଯୋଗୀ ପାଣ୍ଡୁଲିପିରେ ପରିଣତ କରି ଏଇଟିକୁ ପୁସ୍ତକଭାବେ ପ୍ରକାଶ କରିବା ପାଇଁ ପରାମର୍ଶ ଦେଇଥିଲେ ଓ ଉତ୍ସାହିତ କରିଥିଲେ । ଏ ବାଗରେ ମୋର ଅସାମର୍ଥ୍ୟ ପ୍ରକାଶ କରିବାରୁ ତାଙ୍କ ପରାମର୍ଶ କ୍ରମେ ସତ୍ୟ ସାହିତ୍ୟ ସଂସଦ, କୋରାପୁଟ ଉକ୍ତ ପୁସ୍ତକଟିର ପ୍ରକାଶନ ଦାୟିତ୍ୱ ଗ୍ରହଣ କରିଥିବାରୁ ବନ୍ଧୁ ଶ୍ରୀଯୁକ୍ତ ସ୍ୱାଇଁଙ୍କ ନିକଟରେ ମୁଁ ବିଶେଷଭାବେ କୃତଜ୍ଞ ।

ବିଶେଷ କରି ସତ୍ୟ ସାହିତ୍ୟ ସଂସଦର ସମ୍ପାଦକ ବନ୍ଧୁ ଆଡ୍‌ଭୋକେଟ ଜୟନ୍ତ କୁମାର ମିଶ୍ର ଆଗ୍ରହର ସହିତ ଅନୁଷ୍ଠାନର ସହଯୋଗ କ୍ରମେ ପୁସ୍ତକଟିକୁ ପ୍ରକାଶନ ପାଇଁ ସ୍ୱୀକୃତି ପ୍ରଦାନ କରିଥିବା ସଙ୍ଗେ ସଙ୍ଗେ 'ସତ୍ୟ' ପରିବାର ତରଫରୁ ଅକୁଣ୍ଠ ସହଯୋଗ ପାଇଥିବାରୁ ମୁଁ ଶ୍ରୀଯୁକ୍ତ ମିଶ୍ରଙ୍କ ସମେତ ସତ୍ୟ ପରିବାରର ଅନ୍ୟାନ୍ୟ ବନ୍ଧୁ ଯଥା— ଶ୍ରୀଯୁକ୍ତ କୈଳାସ ଷଡଙ୍ଗୀ, ଶ୍ରୀଯୁକ୍ତ ଦେବରଞ୍ଜନ ରଥ, ରବି ଶତପଥୀ, ବାଣା ନାୟକ ପ୍ରଭୃତି ବନ୍ଧୁମାନଙ୍କ ନିକଟରେ ବିଶେଷଭାବେ ଋଣୀ ରହୁଛି ।

ପୁସ୍ତକଟି ନିମନ୍ତେ ପ୍ରଚ୍ଛଦ ଚିତ୍ର ଓ ବ୍ଲକ ପ୍ରସ୍ତୁତିରେ ଶ୍ରୀଯୁକ୍ତ ଉମାକାନ୍ତ ମହାରଣା ଓ ଅକ୍ଷର ସଜ୍ଜାକ୍ଷେତ୍ରରେ ଶ୍ରୀଯୁକ୍ତ ରବିନ ଚନ୍ଦ୍ର ନନ୍ଦଙ୍କ ଆଗ୍ରହ ନିକଟରେ ମୁଁ କୃତଜ୍ଞ । ମୋର ଏ ପୁସ୍ତକ ପ୍ରକାଶନ ପାଇଁ ଯିଏ ସବୁଠାରୁ ଅଧିକ ଆଗ୍ରହାନ୍ୱିତ ଓ ଆନନ୍ଦିତ ସେ ହେଉଛନ୍ତି ମୋର ଚିରମଙ୍ଗଳକାମୀ ଡକ୍ଟର ଶ୍ରୀଶ ପଟେଲ (ବିଭାଗୀୟ ମୁଖ୍ୟ ନୃତତ୍ତ୍ୱ ବିଭାଗ, ବି.ଜେ.ବି. ମହାବିଦ୍ୟାଳୟ, ଭୁବନେଶ୍ୱର) ତାହାଙ୍କ ବହୁମୂଲ୍ୟ ସମୟ ବ୍ୟୟ କରି ପୁସ୍ତକଟି ନିମନ୍ତେ ଅଭିମତଟିଏ ପ୍ରସ୍ତୁତ କରି ଦେଇଥିବାରୁ ମୁଁ ତାଙ୍କ ନିକଟରେ ଚିରକୃତଜ୍ଞ । ତାହାଙ୍କ ଅମାୟିକ ସ୍ନେହ ଆଶୀର୍ବାଦ ମୋ ପାଇଁ ଚିରସ୍ମରଣୀୟ ହୋଇ ରହିବ ।

ଏ ପୁସ୍ତକଟିର ପ୍ରକାଶନ ଅବସରରେ ମୁଁ ଅନ୍ୟ ଯେଉଁମାନଙ୍କ ନିକଟରେ କୃତଜ୍ଞ ସେମାନେ ହେଲେ ଡକ୍ଟର ରବିନାରାୟଣ ଦାଶ (ଅଧ୍ୟକ୍ଷ, ଜୟଦେବ ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର) ଡକ୍ଟର ମହେନ୍ଦ୍ର କୁମାର ମିଶ୍ର (ସହକାରୀ ନିର୍ଦ୍ଦେଶକ, ଦକ୍ଷିଣ ଓଡିଶା ଶିକ୍ଷାଗବେଷଣା ପରିଷଦ, ଭୁବନେଶ୍ୱର) ଶ୍ରୀଯୁକ୍ତ ରାଜେନ୍ଦ୍ର କୁମାର ପୃଷ୍ଟି, ଶ୍ରୀଯୁକ୍ତ ନରେନ୍ଦ୍ରନାଥ ସାହୁ, (ସହକାରୀ କ୍ୟୁରେଟର, ଜୟଦେବ ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର) ପ୍ରଭୃତି ମୋର ପ୍ରକାଶିତ ପ୍ରବନ୍ଧଗୁଡିକ ପଢ଼ି ମୋତେ ବିଭିନ୍ନ ଦିଗରୁ ଅଧିକ ଗବେଷଣା ପାଇଁ ଉତ୍ସାହ ପ୍ରଦାନ କରିଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ ରହୁଛି ।

Digitized by PPRACHIN, SOA

ସାହିତ୍ୟ ସୃଷ୍ଟି ସକ୍ଷମ ନ ହୋଇବ ସାହିତ୍ୟ ପ୍ରତି ପ୍ରଗାଢ଼ ମମତା ଥିବା ମୋର ସହକର୍ମୀ ଶ୍ରୀ ଧବଳେଶ୍ୱର ସେଠୀଙ୍କୁ ସ୍ମରଣ ନ କଲେ ଅକ୍ଷମଣୀୟ ଅପରାଧ ହେବ । ତାଙ୍କ ସାହାଯ୍ୟ ସହାନୁଭୂତି ଓ ସକ୍ରିୟ ସହଯୋଗ ପାଇଁ ମୁଁ ତାଙ୍କ ନିକଟରେ ନିଶ୍ଚିତଭାବରେ ଋଣୀ । ଏତଦ୍‌ବ୍ୟତୀତ ମୋର ଅନ୍ୟାନ୍ୟ ସହକର୍ମୀ ଶ୍ରୀ ଘନଶ୍ୟାମ ବେହେରା, ଗୀତିକାର ପୁରନ୍ଦର କର, ଶ୍ରୀ ଯଦୁମଣି ଦଳାଇ, ଶ୍ରୀ ଭଜମନ ନାୟକଙ୍କ ସାହାଯ୍ୟ ଓ ସହଯୋଗ ଉକ୍ତ ପ୍ରକାଶନ ଦିଗରେ ମଧ୍ୟ କିଛି କମ୍ ନୁହେଁ । ଏଣୁ ଏହି ଅବସରରେ ସେମାନଙ୍କ ନିକଟରେ ମୋର କୃତଜ୍ଞତା ପ୍ରକାଶ କରୁଛି ।

ଅନ୍ୟପକ୍ଷରେ ମୋର ଧର୍ମପତ୍ନୀ ଶ୍ରୀମତୀ ବସନ୍ତ ମଞ୍ଜରୀ ରଥ, ଯାହାଙ୍କ ଅକୁଣ୍ଠ ସାହାଯ୍ୟ ଓ ପ୍ରେରଣା ପାଇ ମୁଁ ଲେଖନୀଧର ପାରିଛି ଏ ପୁସ୍ତକ ତାହାର ଫଳ ଶ୍ରୁତିମାତ୍ର । ଏଣୁ ଏହି ଅବସରରେ ମୁଁ ତାଙ୍କ ନିକଟରେ ମୋ ଋଣ ସ୍ୱୀକାର କରୁଛି ।

ଅବଶେଷରେ ଜେ. ଇ. ଏଲ୍. ସି. ପ୍ରେସର ପରିଚାଳକ ଶ୍ରୀଯୁକ୍ତ ମଙ୍ଗଳଦାନ କଟମ ଓ ତାଙ୍କ ସହକର୍ମୀବୃନ୍ଦଙ୍କ ନିଷ୍ଠାପର ଉଦ୍ୟମ ତଥା କାର୍ଯ୍ୟଦକ୍ଷତା ଯୋଗୁଁ ଉକ୍ତ ପୁସ୍ତକଟି ଏକ ନିର୍ଦ୍ଧାରିତ ସମୟ ମଧ୍ୟରେ ପ୍ରକାଶ ପାଇ ପାରିଥିବାରୁ ସେମାନଙ୍କୁ ଧନ୍ୟବାଦ ଜଣାଇବା ସଙ୍ଗେ ସଙ୍ଗେ କୃତଜ୍ଞତା ସ୍ୱୀକାର କରୁଛି ।

କୋରାପୁଟ (ଶାବର ଶ୍ରୀକ୍ଷେତ୍ର) **ରଘୁନାଥ ରଥ**

୧୫ ଅକ୍ଟୋବର ୧୯୯୩

Digitized by PPRACHIN, SOA

# ବିଷୟ ସୂଚୀ



Digitized by PPRACHIN, SOA

# କନ୍ଧମାନଙ୍କ ଆଦିବାସସ୍ଥଳୀ

କନ୍ଧ ସମାଜର ପ୍ରଚଳିତ କିମ୍ବଦନ୍ତୀରୁ ଜଣାଯାଏ କନ୍ଧମାଳଠାରେ ପୂର୍ବରୁ କୁରୁମ୍ବ ଜାତିର ଲୋକେ ବସବାସ କରୁଥିଲେ । କନ୍ଧମାନେ କନ୍ଧମାଳରେ ପ୍ରବେଶ କଲାପରେ କୁରୁମ ଜାତିର ଲୋକଙ୍କୁ ଯୁଦ୍ଧରେ ପରାସ୍ତ କରି ତଡିଦେଇ ସ୍ଥାୟୀ ବାସିନ୍ଦାଭାବେ କନ୍ଧମାଳଠାରେ ରହିଗଲେ । କନ୍ଧମାଳରେ କନ୍ଧମାନେ ମୁଖ୍ୟତଃ ଦକ୍ଷିଣରୁ ବା ଗଞ୍ଜାମ ଜିଲ୍ଲାର ମାଳାଞ୍ଚଳରୁ ଆସି କନ୍ଧମାଳରେ ପ୍ରବେଶ କରିଥିବା ସମ୍ପର୍କରେ ସେମାନଙ୍କ ମଧ୍ୟରେ କଥିତଥିବା ବହୁ ପ୍ରବାଦରୁ ଜାଣିବାକୁ ମିଳିଥାଏ ।

ସମ୍ପ୍ରତି କନ୍ଧମାଳ ଅଞ୍ଚଳ କନ୍ଧମାନଙ୍କର ବହୁ ପୁରାତନ ବାସସ୍ଥଳୀ ହୋଇଥିଲେ ମଧ୍ୟ ସେମାନେ ଏହି ଅଞ୍ଚଳର ମୂଳ ବାସିନ୍ଦା ନୁହନ୍ତି ଏଥିରେ ସନ୍ଦେହ ନାହିଁ । ତେବେ ଏମାନଙ୍କ ଆଦିବାସସ୍ଥଳୀ କେଉଁଠାରେ ଥିଲା ସେ ସମ୍ପର୍କରେ ଆଲୋଚନା କଲେ ଜଣାଯାଏ ଯେ, ଏମାନେ ପ୍ରାୟ ଅଢ଼େଇ ହଜାର ବର୍ଷ ପୂର୍ବରୁ ହିମାଳୟ ପାଦଦେଶ ଅଞ୍ଚଳମାନଙ୍କରେ ବସବାସ କରୁଥିଲେ ଓ କ୍ରମଶଃ ସେହି ମୂଳ ସ୍ରୋତରୁ ବିଚ୍ଛିନ୍ନ ଏକ ସ୍ରୋତ ସମୟକ୍ରମେ ବିନ୍ଧ୍ୟଗିରି ପଥ ଦେଇ ଓଡ଼ିଶାରେ ପ୍ରବେଶ କରି ଏହି କନ୍ଧମାଳ ଅଞ୍ଚଳକୁ ନିଜର ସ୍ଥାୟୀ ବାସସ୍ଥଳୀଭାବେ ଗ୍ରହଣ କରି ନେଇଛନ୍ତି ।

ମୂଳତଃ କନ୍ଧମାନଙ୍କୁ ନୃତତ୍ତ୍ୱବିତ୍‌ମାନେ ପ୍ରୋଟୋ ଆଷ୍ଟ୍ରୋଲଏଡ଼ ଗୋଷ୍ଠୀ ଭୁକ୍ତ କରିଅଛନ୍ତି । କିନ୍ତୁ ସେମାନଙ୍କ ମଧ୍ୟରେ ମଙ୍ଗୋଲଏଡ଼ ଲକ୍ଷଣ ମଧ୍ୟ ଦେଖାଯାଇଥାଏ । ଏଣୁ ଗବେଷକ ଶ୍ରୀ ନିକ୍ଷନ ଶର୍ମାଙ୍କ ମତାମତ ଅନୁଯାୟୀ କନ୍ଧମାନଙ୍କୁ ମଙ୍ଗୋଲଏଡ଼ ମିଶ୍ରିତ ପ୍ରୋଟୋ ଆଷ୍ଟ୍ରୋଲଏଡ଼ ଗୋଷ୍ଠୀ ଭାବେ ଗ୍ରହଣ କରିବା ଅଧିକ ଯୁକ୍ତିସଙ୍ଗତ ମନେ ହୁଏ । ହରପ୍ପା ଓ ମହେଞ୍ଜୋଦାରରୁ ପ୍ରାପ୍ତ ନରକଙ୍କାଳ ପରୀକ୍ଷାରୁ ସେଠାରେ ଅନ୍ୟାନ୍ୟ ଜନଗୋଷ୍ଠୀ ସହିତ ଏହି ପ୍ରୋଟୋ ଆଷ୍ଟ୍ରୋଲଏଡ଼ ଓ ମଙ୍ଗୋଲଏଡ଼ ଗୋଷ୍ଠୀ ବସବାସ କରୁଥିବା ଜଣାଯାଏ । ଏଣୁ କନ୍ଧ ବା କୁଇ ଗୋଷ୍ଠୀର ଲୋକେ ଖ୍ରୀଷ୍ଟ ପୂର୍ବ ୨୫୦୦ ବର୍ଷ ପୂର୍ବରୁ ହରପ୍ପା ଓ ମହେଞ୍ଜୋଦାର ସଭ୍ୟତା ସମୟରେ ଥିବା ଅନୁମାନ କରାଯାଇପାରେ ।

ଉକ୍ତ ସଭ୍ୟତାର ବିଲୟ ଘଟିବା ଫଳରେ ସେଠାର ଅଧିବାସୀମାନେ ସୈନ୍ଧବ ଗାଙ୍ଗେୟ ଉପତ୍ୟକାକୁ ଚାଲିଯାଇ ବସବାସ କରିଥିବା

Digitized by PPRACHIN, SOA

ସମ୍ପର୍କରେ ଐତିହାସିକ ପ୍ରମାଣ ରହିଛି । ସମ୍ଭବତଃ ସେହି ସମୟରୁ କନ୍ଧ-ମାନେ ହିମାଳୟ ପାଦଦେଶରେ ବସବାସ କରିବାକୁ ଲାଗିଲେ ବୋଲି ଅନୁମାନ କରାଯାଇଥାଏ । ଟୋଖାରି ଭାଷା ସହିତ କୁଇ ଭାଷାର ଯଥେଷ୍ଟ ସାମଞ୍ଜସ୍ୟ ଥିବା ସମ୍ପର୍କରେ ପୂର୍ବତନ ଭାରତୀୟ ସୈନ୍ୟ ବାହିନୀର କର୍ମଚାରୀ ଶ୍ରୀ ସନ୍ଧ୍ୟାବାଘ କହଁର (ଟିକାବାଲି ନିକଟସ୍ଥ ଉଦରଖୋଲ ମୌଜାର ଅଧିବାସୀ) ଯେ କି ନିଜେ କନ୍ଧ ବଂଶୋଦ୍ଭବ ଅଟନ୍ତି, ତାଙ୍କଠାରୁ ତ୍ରୁଟାଂଶ ଆଲୋଚନାକ୍ରମେ ଏଇ ଲେଖକ ଜାଣିବାକୁ ପାଇଛନ୍ତି ।

ହିମାଳୟ ପାଦଦେଶ ଅଞ୍ଚଳରୁ କୌଣସି ଅଜ୍ଞାତ କାରଣ ବଶତଃ ସେମାନଙ୍କ ଏକ ସ୍ରୋତ ଦକ୍ଷିଣ ଦିଗକୁ ଓ ଅନ୍ୟ ଏକ ସ୍ରୋତ ପୂର୍ବ ଦିଗକୁ ଗତି କରିଥିବା ଅନୁମାନ କରାଯାଏ । କନ୍ଧ ସମାଜରେ ପ୍ରଚଳିତ ଏକ ଢଗକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ସେମାନେ ହିମାଳୟ ପାଦଦେଶରୁ ଦକ୍ଷିଣକୁ ଆସି ବିନ୍ଧ୍ୟଗିରି ଅଞ୍ଚଳରେ ବସତି ସ୍ଥାପନ କରିଥିଲେ ।

"ହିମାଳୟୁର ଅନ୍ଦ୍ ବିଞ୍ଜିଗିରିର କନ୍ଦ୍
ଅଠେ ଜେଲେଁ କାଁ ଠେଁ ବସଲି କଲସୁର୍ ମନ୍ଦ"

ବିନ୍ଧ୍ୟଗିରି ଅଞ୍ଚଳରୁ କ୍ରମଶଃ ସେମାନଙ୍କ ଗତି ଓଡ଼ିଶାକୁ ହୋଇଥିବା ଜଣାଯାଏ ଇତିହାସରେ ସେମାନଙ୍କୁ ବିନ୍ଧ୍ୟ ମୌଳିକ ଭାବରେ ନାମିତ କରାଯାଇଛି । ଏହି ବିନ୍ଧ୍ୟ ମୌଳିକଙ୍କ ଦ୍ୱାରା ଐତିହାସିକ ଓଡ଼ିଶା ଭୂଖଣ୍ଡରେ ଅଷ୍ଟାଦଶ ଅଟବୀ ବା ଅଠରଟି ଆଟବିକ୍ ରାଜ୍ୟ ଗଠିତ ହୋଇଥିବା ସମ୍ପର୍କରେ ଇତିହାସରୁ ଜଣାଯାଏ । ଏହି ଅଷ୍ଟାଦଶ ଅଟବୀକ୍ ରାଜ୍ୟକୁ ପରବର୍ତ୍ତୀ ସମୟରେ ଓଡ଼ିଶାର ଭୌଗୋଳିକ ମାନଚିତ୍ରରେ ଅଠରଟି ଗଡ଼ଜାତ ରାଜ୍ୟଭାବରେ ଚିହ୍ନିତ କରାଯାଇଥିଲା । ଯାହା ସମୟର ପରିବର୍ତ୍ତନକ୍ରମେ ପରିବର୍ତ୍ତିତରୂପ ନେଇ ଆଧୁନିକ ଓଡ଼ିଶା ରାଜ୍ୟର ବିଭିନ୍ନ ଜିଲ୍ଲାସହିତ ମିଶି ରହିଛି । ଓଡ଼ିଶା ଭୂଖଣ୍ଡର ଏହି ଆଟବିକ୍ ରାଜ୍ୟ ସମ୍ପର୍କରେ ଅଶୋକଙ୍କ ଶିଳାଲେଖ (ଖ୍ରୀ.ପୂ. ୨୬୧)ରୁ ଜଣାଯାଏ ।

ବସ୍ତର ଅଞ୍ଚଳର ଡୋରଲି ମୁରିଆ ଓ ପାହାଡ଼ ମାରିଆ ଆଦି-ବାସୀଙ୍କସହ କନ୍ଧମାନଙ୍କ ଶାରୀରିକ ସାମଞ୍ଜସ୍ୟଥିବା ଗବେଷଣାରୁ ଜଣାଯାଇଛି । ଏଣୁ ବିନ୍ଧ୍ୟ ଅଞ୍ଚଳରୁ ଓଡ଼ିଶାକୁ କନ୍ଧମାନେ ଆସିଥିବା ଯୁକ୍ତିର କିଛିଟା ସତ୍ୟତା ରହିଛି ବୋଲି ଅନୁମାନ କରାଯାଏ ।

Digitized by PPRACHIN, SOA

ସମ୍ଭବତଃ କନ୍ଧମାନେ ମଧ୍ୟ ପ୍ରଦେଶରୁ ପ୍ରଥମେ କଳାହାଣ୍ଡି ଅଞ୍ଚଳରେ ପ୍ରବେଶ କରି ଏକ ସ୍ରୋତ ଉତ୍ତର-ପୂର୍ବ ଦିଗରେ ଓ ଅନ୍ୟ ଏକ ସ୍ରୋତ ଦକ୍ଷିଣ-ପୂର୍ବ ଦିଗରେ ଗତି କରିଥିବା ଅନୁମାନ କରାଯାଏ । ଉତ୍ତର ପୂର୍ବ ଦିଗରେ ଗତି କରିଥିବା ସ୍ରୋତଟି କଳାହାଣ୍ଡି, ପାଟଣା, ସୋନପୁର, ବଉଦ, ସମ୍ବଲପୁର, ଢେଙ୍କାନାଳ ଅଞ୍ଚଳରେ ବସତି ସ୍ଥାପନ କରିଥିବାବେଳେ ଦକ୍ଷିଣ-ପୂର୍ବ ଦିଗରେ ଗତି କରିଥିବା ସ୍ରୋତଟି ଫୁଲବାଣୀ ଜିଲ୍ଲାର ଦକ୍ଷିଣ-ପଶ୍ଚିମ ଦିଗରେ ଥିବା ବେଲଘର ଅଞ୍ଚଳକୁ ସୀମାରେଖା କରି କୋରାପୁଟ, ଗଞ୍ଜାମ ଓ ଆନ୍ଧ୍ର ପ୍ରଦେଶ ଯାଏ ଗତି କରିଥିବା ଅନୁମେୟ । ଗଞ୍ଜାମ ଅଞ୍ଚଳରୁ କ୍ରମଶଃ ସେମାନେ ସମ୍ପ୍ରତି କନ୍ଧମାଳ ଭାବରେ ପରିଚିତ ମାଳ ଅଞ୍ଚଳରେ ପ୍ରବେଶ କରିଥିବା ଅନୁମିତ ହୁଏ ।

ଖ୍ରୀଷ୍ଟ ପୂର୍ବ ତୃତୀୟ ଶତାବ୍ଦୀ ପୂର୍ବରୁ ଓଡ଼ିଶାରେ ଆଦିବାସୀ ଗୋଷ୍ଠୀଙ୍କ ଅବସ୍ଥାନ ସମ୍ପର୍କରେ ଐତିହାସିକ ପ୍ରମାଣ ଥିଲେ ମଧ୍ୟ କନ୍ଧମାଳ ଅଞ୍ଚଳକୁ କନ୍ଧ ଗୋଷ୍ଠୀର ଆଗମନ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବେଳକୁ ହୋଇଥିବା ସମ୍ଭବ । କାରଣ ଟିକାବାଲି ନିକଟସ୍ଥ ତୁର୍ଙ୍ଗିଠାରେ ଥିବା କେତେକ ପ୍ରତ୍ନତାତ୍ତ୍ୱିକ ଅବଶେଷରୁ ସେଗୁଡିକ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀଠାରୁ ଅଷ୍ଟମ ଶତାବ୍ଦୀ କାଳର ହୋଇଥିବା ଅନୁମାନ କରାଯାଇପାରେ । ଏହି ପ୍ରତ୍ନତାତ୍ତ୍ୱିକ ଅବଶେଷ ଗୁଡିକ ଅନୁଧ୍ୟାନ କଲାପରେ ମୋର ଦୃଢ଼ ବିଶ୍ୱାସ ଆସିଛି ଯେ ହୁଏତ କନ୍ଧମାନଙ୍କ କନ୍ଧମାଳ ଅଞ୍ଚଳକୁ ଆସିବା ଅନ୍ତବେଶୀରେ ଆଜି ଶହେ ବର୍ଷ ପୂର୍ବରୁ ବା ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବେଳକୁ ହୋଇ ଥାଇପାରେ ।

ହିମାଳୟ ପାଦଦେଶରୁ ପୂର୍ବ ଦିଗକୁ ଗତି କରିଥିବା ସ୍ରୋତଟି ସମ୍ଭବତଃ ଭାରତସୀମା ପାରହୋଇ ଚୀନ ଦେଶର ସିଚୁଆନ ପ୍ରଦେଶରେ ପ୍ରବେଶ କରିଥିବା ଅନୁମିତ ହୁଏ । ଏବେବି ସିଚୁଆନ ପ୍ରଦେଶର ଉତ୍ତର ଚେଙ୍ଗଡୁ ଅଞ୍ଚଳରେ ଏକଲକ୍ଷ (୧୦୦୦୦୦) କ୍ୟୁଆଙ୍ଗ (Qiang) ଜାତିର ଆଦିବାସୀ ବାସ କରୁଥିବା ଜଣାଯାଏ ଏବଂ ଥାଇଲାଣ୍ଡରେ ଏକଲକ୍ଷ ଷାଠିଏ ହଜାର (୧୬୦୦୦୦) କୁଇ (Kui) ଆଦିବାସୀ ଗୋଷ୍ଠୀ ବାସ କରୁଥିବା ଜଣାଯାଏ । ବୋର୍ଣ୍ଣିଓ ଦ୍ୱୀପର କାୟନ ଆଦିବାସୀମାନଙ୍କର ମଧ୍ୟ ଏଇ କୁଇ

Digitized by PPRACHIN, SOA

ସମ୍ପ୍ରଦାୟ ସହିତ ଯଥେଷ୍ଟ ସାମଞ୍ଜସ୍ୟ ରହିଛି । କାୟୂନ ଆଦିବାସୀ ରମଣୀମାନେ କୁଇ ଆଦିବାସୀ ଗୋଷ୍ଠୀ ପରି ମଧ୍ୟ ସେମାନଙ୍କ ଦେହ ଓ ମୁହଁରେ ଚିତା କୁଟାଉଥିବା ଜଣାଯାଏ ।

ଚୀନ ଦେଶର ସିଚୁଆନ ପ୍ରଦେଶର କ୍ୱାଙ୍ଗ, ଥାଇଲାଣ୍ଡର କୁଇ ଓ ବୋର୍ଣ୍ଣିଓ ଦ୍ୱୀପପୁଞ୍ଜର କାୟୂନ ଆଦିବାସୀମାନଙ୍କସହ ତଥା ହିମାଳୟ ପାଦଦେଶ ଅଞ୍ଚଳର ଆଦିବାସୀମାନଙ୍କ ଶାରୀରିକ, ସାଂସ୍କୃତିକ ତଥା ଭାଷାତାତ୍ତ୍ୱିକ ଗବେଷଣା ପୁଙ୍ଖାନୁପୁଙ୍ଖଭାବରେ କରାଯାଇ କନ୍ଧମାନଙ୍କସହ ମେଳ କରାଗଲେ କନ୍ଧମାନଙ୍କ ଆଦି ବାସସ୍ଥଳୀ ନିର୍ଣ୍ଣୟ କରିବା ଅପେକ୍ଷାକୃତ ସହଜ ହୋଇପାରେ ।

## ସହାୟକ ଗ୍ରନ୍ଥସୂଚୀ


୧. ବକ୍ସି, ଗୋକୁଳଗୋବିନ୍ଦ—ସମ୍ବାଦ ତା

୨. Sharma, Krishan—The Kends of Orissa 1979, New Delhi

୩. National Geographic Vol No.

୪. Operation World




Digitized by PPRACHIN, SOA

# ଶାରୀରିକ ଗଠନ

ଗବେଷକମାନେ କନ୍ଧମାନଙ୍କୁ ଭାଷାତାତ୍ତ୍ୱିକ ଦୃଷ୍ଟିକୋଣରୁ ଦ୍ରାବଡ଼ ଶ୍ରେଣୀଭୁକ୍ତ କରଥାନ୍ତି ଏବଂ ଗୋଷ୍ଠୀଭିତ୍ତିକ (Racial) ଦୃଷ୍ଟିରୁ ସେମାନଙ୍କୁ ପ୍ରୋଟୋ ଆଷ୍ଟ୍ରୋଲଏଡ଼ ଗୋଷ୍ଠୀଭାବେ ଚିହ୍ନିତ କରନ୍ତି ।

କନ୍ଧମାନଙ୍କ ଶାରୀରିକ ଗଠନ ସମ୍ପର୍କରେ ୧୮୩୭ ଖ୍ରୀଷ୍ଟାବ୍ଦରେ କ୍ୟାପଟେନ ମ୍ୟାକ ଫରସନ (Captain Mc. Pherson) ଲେଖିଛନ୍ତି — ତାଙ୍କର ଶରୀର ଗଠନ ଏପରି ଯେ ଏହା ଅତ୍ୟନ୍ତ କଠିନ, ଶ୍ରମ କରିବାକୁ ଏବଂ ଅଭାବ ସହ୍ୟ କରିବାକୁ ଉପଯୁକ୍ତ । ସେମାନେ ବଳବାନ । ହାତ, ଗୋଡ଼ ଓ ଦେହର ମାଂସପେଶିଗୁଡ଼ିକ ଖୁବ୍ ଭଲ ରୂପେ ବାହାରକୁ ଜଣା-ପଡ଼େ । ଚମଡ଼ା ପରିଷ୍କାର ଏବଂ ଚକ୍‌ଚକ୍ । ରଙ୍ଗ ଗାଢ଼ ତମ୍ବାଳିଆ । ଗୋଇଠି ଏବଂ ଗୋଡ଼ର ପଛଭାଗ ଏକ ରେଖାରେ ରହେ । ହିନ୍ଦୁମାନଙ୍କ ପାଦ ଅପେକ୍ଷା କନ୍ଧ ବଡ଼ । ପାଦର ଭିତର ପାଖ ବେଶୀ ବଙ୍କା ନ ହେଲେ ମଧ୍ୟ ସେ ଅସାଧାରଣଭାବେ ଦୌଡ଼ିପାରେ । କପାଳ ଉଚ୍ଚ ଏବଂ ଚଉଡ଼ା । ଗାଲର ହାଡ଼ ବାହାରକୁ ଉଚ୍ଚ ଦେଖାଯାଏ । ନାକ ସାଧାରଣତଃ ଅଗ୍ର-ଭାଗରେ ଓସାରିଆ ଏବଂ କୁଞ୍ଚିତ ବଙ୍କା । ପାଟିଟା ବଡ଼ । ଏସବୁ ଆକାର ପ୍ରକାର ଦୃଢ଼ତା ବୁଦ୍ଧିମତା ଓ ରସିକତାର ଚିହ୍ନ । ସେମାନେ ନ୍ୟୂନତା କଅଣ ଜାଣନ୍ତି ନାହିଁ । (୧)

ମ୍ୟାକ ଫରସନଙ୍କ ବର୍ଣ୍ଣନା ସହିତ ପ୍ରୋଟୋ ଆଷ୍ଟ୍ରୋଲଏଡ଼ (Proto Austroloid)ଙ୍କ ବର୍ଣ୍ଣନାର ସାମଞ୍ଜସ୍ୟ ଦେଖାଯାଏ । କାରଣ ପ୍ରୋଟୋ ଆଷ୍ଟ୍ରୋ ଆଷ୍ଟ୍ରୋଲଏଡ଼ମାନଙ୍କ ଶରୀର ଗଠନ ସହ କନ୍ଧମାନଙ୍କ ଶରୀରର ବର୍ଣ୍ଣ କଳାମିଶ୍ରିତ ମାଟିଆ ବା କଳା, ବଡ଼ ଓ ଚେପଟା ନାକ, ମୋଟା ଓଠ, କମ ଉଚ୍ଚତା, ଲମ୍ବା ମୁଣ୍ଡ, କୁଞ୍ଚକୁଞ୍ଚିଆ ବାଳ ଇତ୍ୟାଦିର ସାମଞ୍ଜସ୍ୟ ରହିଛି ।

ଶର୍ମା, ଗୁହଙ୍କ ମତକୁ ଉଦ୍ଧାର କରି କହନ୍ତି — According to Guha the Proto Austroloid type is Characterized by short stature, dark brown to black skin colour, progna-tuism broad flat nose (platyrruime) more fleshy everted lips and wavy or even curly hair and dolichocephalic ie. Long headed. (2)

Digitized by PPRACHIN, SOA

ଗବେଷଣାରୁ ଜଣାଯାଏ ଯେ ମଙ୍ଗୋଲ ଦ୍ରାବିଡ଼ିଆନଙ୍କ ଓଡ଼ିଶା କନ୍ଧମାନଙ୍କ ସାଧାରଣ ଉଚ୍ଚତା ୧୫୭.୫ ସେଣ୍ଟିମିଟର ଏବଂ Risleyଙ୍କ ବିବରଣୀ ଅନୁଯାୟୀ ଓଡ଼ିଶାର ମଙ୍ଗୋଲ ଦ୍ରାବିଡ଼ିଆନଙ୍କ ନାକ ସହିତ କନ୍ଧମାନଙ୍କ ନାକର ଆକାର ନିକଟତର ଅଟେ ।

ଏହା ବ୍ୟତୀତ ମଧ୍ୟପ୍ରଦେଶର ବସ୍ତର ଅଞ୍ଚଳରେ ବାସ କରୁଥିବା ମୁରିଆମାନଙ୍କ ମୁଣ୍ଡର ମାପ ସହିତ କନ୍ଧମାନଙ୍କ ମୁଣ୍ଡର ମାପ ଶତକଡ଼ା ୮୨ ଭାଗ ସମାନ । କନ୍ଧମାନଙ୍କ ନାକର ଗଠନ ମଧ୍ୟ ମଧ୍ୟପ୍ରଦେଶ ବାସୀ ଡୋରଲା, ମୁରିଆ ଓ ଭତ୍ରାମାନଙ୍କ ନାକ ମାପର ଖୁବ୍ ନିକଟବର୍ତ୍ତୀ ଅଟେ । ପାହାଡ଼ ମୁରିଆ ଓ ମୁରିଆମାନଙ୍କ ମୁହଁର ଗଠନସହ କନ୍ଧମାନଙ୍କ ମୁହଁର ଗଠନର ଶତକଡ଼ା ୩୯ ଭାଗ ସାଦୃଶ୍ୟ ରହିଛି ।

ଉଚ୍ଚତା ଅନୁସାରେ ଦେଖିବାକୁ ଗଲେ ମଧ୍ୟ କନ୍ଧମାନଙ୍କ ଉଚ୍ଚତା (୧୫୭.୫) ବସ୍ତରର ଡୋରଲା (୧୬୦.୦୧) ଭତ୍ରା (୧୬୦.୩୭ ସେମି) ଙ୍କର ଖୁବ୍ ନିକଟବର୍ତ୍ତୀ ଅଟେ । ତେଣୁ ତୁଳନାତ୍ମକ ଅଧ୍ୟୟନରୁ କନ୍ଧମାନେ ମଧ୍ୟପ୍ରଦେଶର ବସ୍ତର ଆଦିବାସୀଙ୍କସହ ସାଦୃଶ୍ୟ ଥିବା ଜଣାଯାଏ । ଏଣୁ ଶର୍ମାଙ୍କ ମତରେ – Konds resemble with Bastar Tribes living in their neighbour hood like Dorla, Muria, Hill Maria and Bhatra in their physical traits (3)

ଗବେଷଣାରୁ କନ୍ଧମାନଙ୍କ ଶାରୀରିକ ଓଜନ ଅନୁଯାୟୀ ଶରୀରରେ ଜଳ ଓ ଚର୍ବିର ପରିମାଣ ନିମ୍ନମତେ ସ୍ଥିର କରାଯାଇଛି (୪)

Adult Male (ସାବାଳକ ପୁରୁଷ)

| | ଶରୀର ଓଜନ | ଶାରୀରିକଜଳ | ଶାରୀରିକ ଚର୍ବି |
|---|---|---|---|
| ସାବାଳକ ପୁରୁଷ — (୨୫ ବର୍ଷ ବୟସ୍କ) | ୭୦ କି.ଗ୍ରା | ୫୮.୯% | ୧୯.୭% |
| କନ୍ଧ ପୁରୁଷ (୨୦ରୁ ୫୦ ବର୍ଷ) | ୪୭.୧ କି ଗ୍ରା | ୫୧.୦୨% | ୨୬.୭୨% |

Adult Female (ସାବାଳିକା ମହିଳା)

| | | | |
|---|---|---|---|
| ସାବାଳିକା ମହିଳା (୨୫ ବର୍ଷ ବୟସ୍କା) | ୭୦ କି.ଗ୍ରା | ୫୧.୩% | ୨୯.୮% |
| କନ୍ଧ ମହିଳା (୧୮ରୁ ୪୫ ବର୍ଷ) | ୪୧.୨୫ କି.ଗ୍ରା | ୫୦.୫୫% | ୨୫.୮ |

Digitized by PPRACHIN, SOA

ଉପରୋକ୍ତ ହିସାବରୁ କନ୍ଧମାନଙ୍କର ମଧ୍ୟରେ ପୁଷ୍ଟିହୀନତା ରହିଥିବା ସ୍ପଷ୍ଟ ଅନୁମେୟ । ତେଣୁ ସେମାନେ ପୁଷ୍ଟିହୀନତା ଯୋଗୁଁ ନାନା ରୋଗ ବ୍ୟାଧିର ସମ୍ମୁଖୀନ ହୋଇଥାନ୍ତି ।

ଭାରତୀୟ ଜୀବନବୀମା ନିଗମ ଜଣେ ସାବାଳକ ବ୍ୟକ୍ତିର ଉଚ୍ଚତା ଅନୁସାରେ କେତେ ଓଜନ ରହିବା କଥା ସ୍ଥିର କରିଛନ୍ତି ।

| ଉଚ୍ଚତା ସେ.ମିରେ | ଓଜନ କେ.ଜିରେ | ଉଚ୍ଚତା ସେ ମିରେ | ଓଜନ କେ.ଜିରେ |
|---|---|---|---|
| ୧୪୬ | ୪୬.୬ | ୧୬୦ | ୫୩.୭ |
| ୧୪୮ | ୪୭.୪ | ୧୬୨ | ୫୪.୯ |
| ୧୫୦ | ୪୮.୩ | ୧୬୪ | ୫୭.୨ |
| ୧୫୨ | ୪୯.୨ | ୧୬୬ | ୫୭.୬ |
| ୧୫୪ | ୫୦.୩ | ୧୬୮ | ୫୯.୧ |
| ୧୫୬ | ୫୧.୪ | ୧୭୦ | ୬୦.୬ |
| ୧୫୮ | ୫୨.୫ | ୧୭୨ | ୬୨.୧ |

ଉପରୋକ୍ତ ପ୍ରସ୍ତାବିତ ଓଜନ ତୁଳନାରେ ଶତକଡ଼ା ୫୦.୯୪ ଭାଗ କନ୍ଧଙ୍କ ଓଜନ ୫ କିଲୋଗ୍ରାମ କମ ଓ ଶତକଡ଼ା ୮୩.୦୨ ଭାଗ କନ୍ଧଙ୍କ ଓଜନ ଏକ କିଲୋଗ୍ରାମ କମଥିବା ଜଣାଯାଏ । (୫) ଏଥିରୁ ମଧ୍ୟ ଜଣାଯାଏ ଯେ ଅଧିକାଂଶ କନ୍ଧ ପୁଷ୍ଟିହୀନତାର ଶୀକାର ହୋଇଥାନ୍ତି । ଏଣୁ କନ୍ଧମାନଙ୍କ ଜୀବନଯାତ୍ରା ତଥା ଆର୍ଥିକମାନର ଉନ୍ନତ ହେବା ଏକାନ୍ତ ବାଞ୍ଛନୀୟ ।

## ସହାୟକ ଗ୍ରନ୍ଥସୂଚୀ--


୧. ମଲିକ, ମେଦିନୀପୁର – କନ୍ଧ ଓ କନ୍ଧମାଳ–ପୃ. ୬

୨. Sharma, Krisan – The Konds of Orissa 1979 New Delhi—P. 5

୩. Ibid—Page—94

୪. Ibid—Page—103

୫. Ibid—Page—96–97


Digitized by PPRACHIN, SOA

# ସାମାଜିକ ସଂପର୍କ

ହିନ୍ଦୁ ପରିବାରରେ କନ୍ଧମାନେ ଏକାନ୍ନବର୍ତ୍ତୀ ପରିବାରରେ ବାସ କରନ୍ତି । ଗୋଟିଏ କନ୍ଧ ପରିବାରରେ ଗୋସେଇଁ ବାପା, ଗୋସେଇଁ ମାଆ, ବାପା, ମାଆ, ପୁଅ,ଝିଅ, ବିବାହିତ ପୁଅ, ବୋହୂ, ନାତି, ନାତୁଣୀ ଏକତ୍ର ବାସ କରୁଥିବା ଦେଖାଯାଏ । ମାତ୍ର ବହୁ କ୍ଷେତ୍ରରେ ପୁଅ ବିବାହ କରିବାର କିଛିଦିନ ପରେ ବାପା, ମାଆଙ୍କଠାରୁ ଅଲଗା ହୋଇ ରହିବା ଦେଖିବାକୁ ମିଳେ । କନ୍ଧ ସାମାଜିକ ଚଳଣିରେ ସାନ ପୁଅ ବାପାର ଘରେ ରହିବାର ଅଧିକାର ପାଇଥାଏ । ଏଣୁ ବଡ଼ ପୁଅମାନେ ଅଲଗା ଘର କରିବା ଠାରୁ ଅଲଗାଭାବରେ ରହିଥାନ୍ତି ।

କନ୍ଧ ସମାଜରେ ପରିବାରର ଶ୍ରେଷ୍ଠ ମାନ୍ୟତାପ୍ରାପ୍ତ ବ୍ୟକ୍ତିଭାବରେ ଗୋସେଇଁ ବାପା ଓ ଗୋସେଇଁ ମାଆଙ୍କୁ ନିଆଯାଏ । କନ୍ଧ ଭାଷାରେ ଗୋସେଇଁ ବାପାଙ୍କୁ ଆକେ ଓ ଗୋସେଇଁ ମାଆଙ୍କୁ ଆିତା କହନ୍ତି । ସେମାନେ ସବଳ ଥିବାଯାଏ ଶକ୍ତି ମୁତାବକ ଘରର ବିଭିନ୍ନ କାମ କରିଥାନ୍ତି । ନଚେତ୍ ପରି-ବାରର ଅନ୍ୟମାନେ କାମକୁ ଗଲେ ଘର ଜଗିବା ଓ ପରିବାରର ଗ୍ରେଠ ଗ୍ରେଠ ଛୁଆମାନଙ୍କୁ ପାଖରେ ରଖି ସେମାନଙ୍କୁ ଖେଳାଇବା ଦାୟିତ୍ୱ ସେମାନଙ୍କ ଉପରେ ନ୍ୟସ୍ତ କରାଯାଇଥାଏ । ଅବସର ସମୟରେ ସେମାନେ ନାତିନାତୁଣି-ମାନଙ୍କୁ ବିଭିନ୍ନ ଗପ, ଗୀତ, ଢ଼ଗଢ଼ମାଳ ଶୁଣାଇଥାନ୍ତି । କୌଣସି କାମ କରିବା ପାଇଁ ସେମାନଙ୍କୁ ପରିବାରର କେହି ବାଧ୍ୟ କରି ନଥାନ୍ତି । ପୁଅ-ବୋହୂ ନାତିନାତୁଣି ଆଦିଙ୍କୁ ସେମାନଙ୍କ ଭୁଲ କାର୍ଯ୍ୟ ଦେଖିଲେ ଏମାନେ ସତର୍କ କରିଦେବା ଓ ସେ ସଂପର୍କରେ ବୁଝାଇ ଦେବାକୁ ଏମାନେ ନିଜର ଦାୟିତ୍ୱ ବୋଲି ଭାବନ୍ତି । ଅସମର୍ଥ ହେଲେ ଏମାନେ ଚଲାବୁଲା ପାଇଁ ବାଡ଼ି ଖଣ୍ଡିଏ ଧରିଥାନ୍ତି । ପରିବାରର ଅନ୍ୟମାନେ ସେମାନଙ୍କ ସେବା କରିବାକୁ ପରମ କର୍ତ୍ତବ୍ୟ ବୋଲି ମନେ କରନ୍ତି । ଭୋଜିଭାତ ପର୍ବପର୍ବାଣୀମାନଙ୍କରେ ପ୍ରଥମେ ସେମାନଙ୍କୁ ଖାଇବାକୁ ଦିଆଯାଇଥାଏ ।

ବାପାଙ୍କୁ ଏମାନେ ପରିବାରର କର୍ତ୍ତା ଓ ମାଆଙ୍କୁ ପରିବାରର କର୍ତ୍ତ୍ରୀଭାବେ ଗ୍ରହଣ କରି ଥାଆନ୍ତି । ବାପାଙ୍କୁ ଆବା ଓ ମାଆଙ୍କୁ ୟୁା ବା ଆଜାଭାବରେ ସମ୍ବୋଧନ କରାଯାଏ । ବାପା ଘରର ଉନ୍ନତି ଓ ଗୃହବାସ ଦେଖିବା, ଅନ୍ୟାନ୍ୟ ସଦସ୍ୟଙ୍କ ଅସୁସ୍ଥତାରେ ଚିକିତ୍ସା କରାଇବା, ଗୃହପାଳିତ

Digitized by PPRACHIN, SOA

ପଶୁମାନଙ୍କ ଦାୟିତ୍ୱ ନେବା ଆଦି କାର୍ଯ୍ୟ କରିଥାନ୍ତି ଓ ପୁଅଝିଅଙ୍କ ବିବାହ, ବନ୍ଧୁବାନ୍ଧବ ଶଂଖୋଳିବା, ପିତାମାତାଙ୍କ ଶୁଦ୍ଧି କ୍ରିୟା କରିବା, ବନ୍ଧୁବାନ୍ଧବଙ୍କ ବିଭିନ୍ନ ଭୋଜିଭାତ ଓ ସାମାଜିକ ଉତ୍ସବରେ ଯୋଗଦେଇ ନିଜର ଦାୟିତ୍ୱ ତୁଲାଇଥାନ୍ତି । ମାଆ ଘରର ସମସ୍ତ କାର୍ଯ୍ୟ ସହିତ ଗୃହ ସମୟରେ ଚାଳ ଘାଞ୍ଜିବା, ଧାନ ରୋଇବା, ଧାନ କାଟିବା ଓ ବୋହିବା, ଶସ୍ୟ ଅମଳ କରିବା, ହାଟକୁ ବିକ୍ରୀ ନିମନ୍ତେ ମୁଣ୍ଡରେ ଶସ୍ୟାଦି ଜିନିଷ ବହିନେବା ଓ ଅନ୍ୟାନ୍ୟ କାମରେ ସାହାଯ୍ୟ କରିବା ସହିତ ଘରର ସମସ୍ତ ସଦସ୍ୟଙ୍କ ସୁଖ ସୁବିଧା ଦେଖିଥାନ୍ତି ।

କୁଇ ସମାଜରେ ଧୋବା ,ଭଣ୍ଡାରି ଓ ବଢ଼େଇ ଜାତି ସେବାଯୁକ୍ତଭାବରେ କାମ କରିବା ଦେଖାଯାଏ ନାହିଁ । କାରଣ ଅତୀତରେ କନ୍ଧମାନେ ଜନ୍ମଠାରୁ ମୃତ୍ୟୁଯାଏ ବାଳ, ନଖ ଓ ଦାଢ଼ି କାଟିବା ବା କ୍ଷୌର ହେବାର ଆବଶ୍ୟକତା ଉପଲବ୍ଧି କରୁ ନଥିଲେ । ଆଜି କାଲି ଜଣେ ଅନ୍ୟ ଜଣଙ୍କ ବାଳ କାଟିବା, ନିଜେ ଦାଢ଼ି କ୍ଷୌର ହେବା କିମ୍ବା ଭଣ୍ଡାରି ପାଖରେ ଯାଇ କ୍ଷୌର ହେବା ଦେଖାଯାଏ । ସେପରି ସ୍ତ୍ରୀମାନେ ପାଉଁଶ ଦେଇ ବାହାର ଚୁଲିରେ ଲୁଗା ସଫା କରନ୍ତି ଏବଂ ପୁରୁଷମାନେ ବଢ଼େଇ କାମ କରିଥାନ୍ତି । ସେମାନେ ଘର ତିଆରି କରିବା ଓ ଦରକାରୀ କାଷ୍ଠ ଉପକରଣ ନିଜେ ତିଆରି କରିବା ପିଲାଦିନରୁ ଅଭ୍ୟାସ କରନ୍ତି । ବାପା ମାଆମାନେ ପୁଅଝିଅଙ୍କୁ ଅଧିକ ସ୍ନେହ କରନ୍ତି । ସେମାନେ ଖେଳିବା ପାଇଁ କାଠରେ ଗ୍ରେଣ୍ଟ ଲଙ୍ଗଳ, ଡଙ୍ଗା ଇତ୍ୟାଦି ତିଆରି କରି ଦେଇଥାନ୍ତି । ବିଭିନ୍ନ ପ୍ରକାର ଗୀତ ଓ ଗପ ଶୁଣାଇ ଅଙ୍କଟ ହେଲାବେଳେ ବୋଧ କରନ୍ତି ।

ଶାରୀରିକ ଅସୁସ୍ଥତାରେ ଔଷଧ ଉପରେ ସେମାନଙ୍କର ଯେତେଟା ଗୁରୁତ୍ୱ ନଥାଏ, ତାଠାରୁ ଅଧିକ ଗୁରୁତ୍ୱ ଦିଆଯାଏ ଗୁଣିଆ ଦ୍ୱାରା ପୂଜା ଦେଇ ଦେବତାଙ୍କ ସନ୍ତୋଷ ବିଧାନ ଉପରେ । ସେମାନଙ୍କର ବିଶ୍ୱାସ ଯେ ଦେବତାଙ୍କ କୋପ ଯୋଗୁଁ ନାନା ପ୍ରକାର ରୋଗ ବ୍ୟାଧି ହୋଇଥାଏ । ଦେବତାଙ୍କୁ ସନ୍ତୁଷ୍ଟ କରାଗଲେ ରୋଗ ଭଲ ହୋଇଯିବ । ତେଣୁ ସେମାନେ ରୋଗ ହେଲେ ମଦ, କୁକୁଡ଼ା, ଛେଳି, ଘୁଷୁରି ଇତ୍ୟାଦି ବଳି ଦେଇ ଗୁଣିଆ ବା ଗୁରୁମାନଙ୍କ ଦ୍ୱାରା ଦେବତାଙ୍କୁ ପୂଜା ଦେଇଥାନ୍ତି । ଏହା ସତ୍ତ୍ୱେ କେତେକ ଜଡ଼ିବୁଟିର ବ୍ୟବହାର କରାଯାଇ ରୋଗ ଉପଶମ ନିମନ୍ତେ ଚେଷ୍ଟା କରିଥାନ୍ତି ।

Digitized by PPRACHIN, SOA

ଗ୍ରାମର ରକ୍ତ ସମ୍ପର୍କୀୟ ବଡ଼ ବାପା, ବଡ ମାଆ, ଜଜା, ଖୁଡ଼ି, ଗୋସେଇଁ ବାପା. ଗୋସେଇଁ ମାଆ ପ୍ରଭୃତି ମାନ୍ୟ ଲୋକମାନଙ୍କୁ କନିଷ୍ଠମାନେ ଭୟ ଓ ଭକ୍ତି କରନ୍ତି । ବୟସ୍କମାନଙ୍କ ଗୋଷ୍ଠୀରେ କନିଷ୍ଠ-ମାନେ ବସିବାକୁ ପସନ୍ଦ କରନ୍ତି ନାହିଁ । ସେମାନଙ୍କ ସହ ମଦ ପିଇବାକୁ ବି ସଂକୋଚବୋଧ କରନ୍ତି । ବୟସ୍କମାନେ ମଦ ପିଉଥିବାବେଳେ ଯଦି କେହି ଯୁବକ ସେଠାରେ ଆସି ବସେ, ବୟସ୍କମାନେ ତାକୁ ଉଦ୍ଦେଶ୍ୟ କରି ଅନ୍ତରେ ମଦ ବାଣ୍ଟୁଥିବା ଲୋକକୁ କହନ୍ତି "ବଡ଼ ବୁଢ଼ା ଆସିଗଲା, ତା ଆଗେ ମଦ ଦେ ।" ଏପରି କଥା ଶୁଣିଲା ପରେ ଯୁବକଟିର ଲଜ୍ଜାରେ ମୁଣ୍ଡ ନଇଁଯାଏ ଏବଂ ସ୍ଥାନ ଛାଡି ସେ ଚାଲିଯିବାକୁ ବାଧ୍ୟ ହୋଇଥାଏ । ଏଥିରୁ କୁଇ ସମାଜର ଜ୍ୟେଷ୍ଠ କନିଷ୍ଠଙ୍କ ମଧ୍ୟରେ ସମ୍ପର୍କ ସହଜରେ ଜାଣି ହୁଏ । ମଦ ପିଇ ବୟସ୍କମାନଙ୍କ ଆଗକୁ ଆସିବା କିମ୍ବା ବୟସ୍କମାନଙ୍କ ସାମ୍ନାରେ ଧୂମ୍ରପାନ କରିବା ଅପରାଧରୂପେ ବିବେଚିତ ହୋଇ ନଥାଏ । ରକ୍ତ ସମ୍ପର୍କୀୟମାନଙ୍କ ବ୍ୟତୀତ ଗ୍ରାମର ଅନ୍ୟାନ୍ୟ ବୟସ୍କମାନଙ୍କୁ ଜାତି ବର୍ଣ୍ଣ ନିର୍ବିଶେଷରେ ସମ୍ମାନ ଦେବାର ପରଂପରା କୁଇ ସମାଜରେ ରହିଛି ।

ମୋଟ ଉପରେ କହିବାକୁ ଗଲେ କୁଇ ସମାଜରେ ପାରି-ବାରିକ ଜୀବନ ଅତି ମଧୁର ଓ ପରସ୍ପର ମଧ୍ୟରେ ସମ୍ପର୍କ ନିବିଡ଼ ଏବଂ ଅନ୍ୟ ଯେ କୌଣସି ଜାତି ବା ଗୋଷ୍ଠୀର ପାରିବାରିକ ବନ୍ଧନ ଅପେକ୍ଷା ଅତୁଳନୀୟ । କୁଇ ବାଳକବାଳିକାଙ୍କ ଗୁରୁଜନଙ୍କ ପ୍ରତି ଭୟ ଓ ଭକ୍ତି ଦେଖିଲେ ଅଭିଭୂତ ହେବାକୁ ହୁଏ । ଯାହା ଆଧୁନିକ ସଭ୍ୟ ସମାଜରେ ଦୁଷ୍ପ୍ରାପ୍ୟ କହିଲେ ଚଳେ । ଭାଇ ଭାଇ ପୃଥକ ହୋଇ ରହୁଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ମନୋମାଳିନ୍ୟ କ୍ୱଚିତ ଦେଖିବାକୁ ମିଳିଥାଏ । ସାମା-ଜିକ ସମ୍ପର୍କ ମଧ୍ୟ ସେହିପରି ମଧୁର ।

ଏପରି ମଧୁର ସମ୍ପର୍କ ରହିପାରିବାର ମୁଖ୍ୟ କାରଣ ହେଲା, ସେମାନେ ଆର୍ଥିକ ଦୃଷ୍ଟିରୁ ଖୁବ୍ ଅସ୍ୱଚ୍ଛଳ ରହିଲେ ମଧ୍ୟ କେବେ ଅଭାବବୋଧ ଅନୁଭବ କରି ନଥାନ୍ତି । ଯାହାକି ସେମାନଙ୍କ ମାନସିକ ପ୍ରକ୍ରିୟାକୁ କଳୁଷିତ କରିବ । ସେମାନଙ୍କ ସମ୍ପତ୍ତି ବୋଲି ବିଶେଷ କୌଣସି ଜିନିଷ ନଥାଏ । ତେଣୁ ଅର୍ଥ ବା ସମ୍ପତ୍ତି ଲୋଭ ସେମାନଙ୍କ ମଧ୍ୟରେ ଦେଖା-ଯାଏ ନାହିଁ କି ଏଥିପାଇଁ କାହା ସହିତ କଳିତକରାଳ ହୁଏ ନାହିଁ । କନ୍ଧ ସମାଜରେ କଦବା କ୍ୱଚିତ୍ ଗୋଳମାଳ ଦେଖାଯାଇଥାଏ ନୈତିକ ଚରିତ୍ର ଦୃଷ୍ଟିରୁ କନ୍ଧମାନେ ଅନ୍ୟାନ୍ୟ ଆଦିବାସୀ ଗୋଷ୍ଠୀ ତୁଳନାରେ ଯଥେଷ୍ଟ ଉନ୍ନତ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

Digitized by PPRACHIN, SOA

ମା଼ଆର ବାପା ଓ ମାଆ ଅର୍ଥାତ୍ ଅଜା ଓ ଆଇଙ୍କୁ ବ ଆଡ଼େ ଓ ଆଡ଼ା କହିଥାନ୍ତି । ମାମୁଁଙ୍କୁ ମାମା ଓ ମାଇଁଙ୍କୁ ଆମା କହନ୍ତି । ମଉସାଙ୍କୁ ଆବା ଓ ମାଉସୀଙ୍କୁ ଆଙ୍ଗ ସମ୍ବୋଧନ କରନ୍ତି । ମାଉସୀ ପୁଅ ଭାଇଙ୍କୁ ତାଲସା ଓ ମାଉସୀ ଝିଅ ଭଉଣୀଙ୍କୁ ତାଲସାଣି କହନ୍ତି । ପିଉସାଙ୍କୁ ମାମା ଓ ପିଉସୀଙ୍କୁ ଆମା ଡ଼ାକନ୍ତି । ମାମୁଁ ଓ ପିଉସୀ ପୁଅଙ୍କୁ ମିଗି ଓ ଝିଅଙ୍କୁ ମିଗାଲ କହିଥାନ୍ତି । ମାମୁଁ, ମାଉସୀ, ପିଉସୀଙ୍କ ପୁଅ ଓ ଝିଅଙ୍କୁ ନିଜର ଆତ୍ମଜପରି ବ୍ୟବହାର କରିଥାନ୍ତି । ସେମାନଙ୍କ ମଧ୍ୟରେ ଜ୍ୟେଷ୍ଠଙ୍କୁ ସମ୍ମାନ ଓ କନିଷ୍ଠଙ୍କୁ ସ୍ନେହ କରନ୍ତି । ସେହିପରି ଅଜା ଆଇ ମଉସା ମାଉସୀ ଓ ପିଉସା ପିଉସୀଙ୍କୁ ଭୟ ଭକ୍ତି ଓ ସମ୍ମାନ କରିଥାନ୍ତି ।

ଶ୍ୱଶୁର ଘର ଗାଁରେ ଜାଇଁ ସମସ୍ତଙ୍କ ଘରେ ଜାଇଁଙ୍କବରେ ସମ୍ମାନ ପାଇଥାଏ । ଯାହା ଘରକୁ ଗଲେ ସେ ନଆଁ ଓ ଧୂଙ୍ଗିଆ (ଧୂଆଁ ପତ୍ର) ଦେଇ ତାଙ୍କୁ ପ୍ରଥା ଅନୁରୂପ ସମ୍ମାନ ଦେଇଥାନ୍ତି । ସେହିପରି ଶ୍ୱଶୁର ଘର ଗାଁରୁ ଯେ କୌଣସି ବ୍ୟକ୍ତି ଜାଇଁର ଗ୍ରାମକୁ ଗଲେ ଜାଇଁବ ତାଙ୍କୁ ଅନୁରୂପ ସମ୍ମାନ ପ୍ରଦାନ କରନ୍ତି ।

ସଙ୍ଗାତ ବସିବା ସଙ୍ଗାତ ବସିବା, ମଇତ ବସିବା ପରମ୍ପରା ବ କୁଇ ସମାଜରେ ରହିଛି । ସଙ୍ଗାତକୁ କୁଇ ଭାଷାରେ ତଣେ କହନ୍ତି । କୁଇ ସମାଜରେ ଦୁଇ ପ୍ରକାର ସଙ୍ଗାତ ବସିବା ଦେଖାଯାଏ । (୧) ସମ ସଙ୍ଗାତ (୨) ବଣ୍ଟାସୀ ସଙ୍ଗାତ ।

ସମ ସଙ୍ଗାତ —ଜଣଙ୍କ ପରିବାରରେ କ୍ରମାଗତଭାବେ ରୋଗ ବ୍ୟାଧି ଲାଗି ରହିଲେ ଗୁରୁଙ୍କୁ ଡ଼କାଇ କାରଣ ପଚରାଯାଏ । ଗୁରୁ କୁଜିଠା ଦେଖି (ସତ୍ୟତା ଜାଣିବା ପାଇଁ ଏକ ପଦ୍ଧତି) ଯଦି କହନ୍ତି ଯେ ସଙ୍ଗାତ ପିଠା ଆଣି ବଲାନ କଲେ ରୋଗ ବ୍ୟାଧି ଭଲ ହେବ, ତେବେ ନିଜ ଗାଁରେ ଯାହା ଘରେ ସମାନ ସଂଖ୍ୟକ ସଦସ୍ୟଥାନ୍ତି ତାହାଙ୍କ ଘରେ ସଙ୍ଗାତ ସ୍ଥାପନ କରାଯାଇ, ଧାନ ଆଣି, ପିଠାକରି, ପୂଜାଦେଇ ରୋଗ ବଲାନ କରାଯାଇ ଥାଏ । ନିଜ ଗାଁରେ ସେହିପରି ବ୍ୟକ୍ତି ନ ଥିଲେ ଅନ୍ୟ ଗ୍ରାମରେ ସେହି-ପରି ଏକ ପରିବାରର ସନ୍ଧାନ କରାଯାଇ ସେହି ପରିବାରସହ ସଙ୍ଗାତ ବସିଥାନ୍ତି ।

Digitized by PPRACHIN, SOA

ବିଶ୍ୱାସୀ ସଙ୍ଗାତ :—ଯେଉଁ ଲୋକ ସହିତ ବିଶ୍ୱାସ ବଢ଼ିଯାଏ, ଉକ୍ତ ବିଶ୍ୱାସକୁ ସ୍ଥାୟୀ କରିବା ପାଇଁ ସଙ୍ଗାତ ବସାଯାଏ । ସେହି କ୍ଷେତ୍ରରେ ଉଭୟ ବ୍ୟକ୍ତି ପରସ୍ପରକୁ ନିଜ ନିଜ ଘରକୁ ଡ଼ାକନେଇ ପିଠା ଭାତ, ମଦ ମାଂସରେ ଆପ୍ୟାୟିତ କରି ସମ୍ପର୍କକୁ ଦୃଢ଼ କରିଥାନ୍ତି ।

ଏହି ଉଭୟ ପ୍ରକାର ସଙ୍ଗାତକୁ ଭୋଜିଭାତ, ଶୁଦ୍ଧିକ୍ରିୟା ବେଳେ ନିମନ୍ତ୍ରଣ କରାଯାଇଥାଏ । ତେବେ ବିଶ୍ୱାସୀ ପ୍ରକାର ସଙ୍ଗାତ ସହିତ ଅଧିକ ଆନ୍ତରିକତା ଥାଏ । ବିଶ୍ୱାସୀ ସଙ୍ଗାତମାନେ ପରସ୍ପରର ସୁଖ ଦୁଃଖରେ ସମଭାଗୀ ହୋଇଥାନ୍ତି । ଆପଦ ବିପଦବେଳେ ବିନା ଡ଼ାକରାରେ ପାଖରେ ଠିଆ ହୁଅନ୍ତି । ଏପରି ସଙ୍ଗାତ ହୀରଠାରୁ ବି ଅଧିକ ବିବେଚିତ ହୋଇଥାନ୍ତି ।

ଥଟ୍ଟା ପରିହାସ :— ଅଜା ଆଇମାନେ ନାତି ନାତୁଣିମାନଙ୍କୁ ଥଟ୍ଟା ପରିହାସ କରିଥାନ୍ତି । ଦିଅର ଭାଉଜ ଥଟ୍ଟା ପରିହାସ ମଧ୍ୟ କୁଇ ସମାଜରେ ସ୍ୱୀକୃତ । ତେବେ ଦିଅର ଭାଉଜକୁ ମାତୃତୁଲ୍ୟ ମନେ କରିଥାଏ । ସମନ୍ଧି ଓ ସମନ୍ଧିଣି ଜାଇଁ, ଶଳା, ଶାଳୀ, ଶଳାଭାଉଜଙ୍କ ମଧ୍ୟରେ ଥଟ୍ଟା ପରିହାସ ପ୍ରଚଳିତ ଅଛି । ମାତ୍ର ବଡ଼ଶଳା ଓ ବଡ଼ଶାଲୀ ଭାଉଜଙ୍କୁ ଗୁରୁଜନ ସ୍ଥାନୀୟ ମନେ କରାଯାଉଥିବାରୁ ସେମାନଙ୍କୁ ଥଟ୍ଟା କରାଯାଏ ନାହିଁ ।

ସମ୍ମାନ ଦେବା ବିଧି :—ଗୁରୁଜନମାନଙ୍କୁ କନିଷ୍ଠମାନେ ସମ୍ମାନ ଦେବାର ବିଧି ରହିଛି । କୌଣସି ଦୂରସ୍ଥାନକୁ ଦୀର୍ଘଦିନ ପାଇଁ ଗଲାବେଳେ ଗୁରୁଜନମାନଙ୍କୁ ଆଜିକାଲି ହାତଯୋଡ଼ି ନମସ୍କାର କରିବା ଦେଖାଯାଏ । ସେହିପରି ବିଦେଶରୁ ଫେରିଲେ ବି ନମସ୍କାର କରନ୍ତି । କିନ୍ତୁ ପୂର୍ବରୁ କନ୍ଧମାନଙ୍କ ମଧ୍ୟରେ ଏପରି ହାତଯୋଡ଼ି ନମସ୍କାର କରିବା ପ୍ରଥା ନ ଥିଲା । ସେମାନେ ସମ୍ମାନ ପ୍ରଦର୍ଶନ କଲାବେଳେ ଡ଼ାହାଣ ହାତ ମୁଠା କରି, ମୁଠାର ବାହାର ପାଖ କପାଳରେ ଲଗାଇ ନମସ୍କାରସ୍ୱରୂପ ସମ୍ମାନ ପ୍ରଦର୍ଶନ କରୁଥିଲେ । ପ୍ରତ୍ୟେକ ପୁରୁଷ ବ୍ୟକ୍ତି ପ୍ରତ୍ୟେକ ପୁରୁଷ ଶ୍ରେଣୀର ଗୁରୁଜନମାନଙ୍କୁ ଏ ପ୍ରକାର ନମସ୍କାର କରି ସମ୍ମାନ ପ୍ରଦର୍ଶନ କରିଥାନ୍ତି ।

ସ୍ତ୍ରୀ ଲୋକମାନେ କାହାରିକି ନମସ୍କାର କରିବା ବା ମୁଣ୍ଡିଆ ମାରିବା ପ୍ରଥା ପୂର୍ବରୁ କନ୍ଧ ସମାଜରେ ପ୍ରଚଳିତ ନ ଥିଲା । ଏପରିକି ପୂର୍ବରୁ ଗୁରୁଜନମାନଙ୍କୁ କନ୍ଧ ପରିବାରର ସ୍ତ୍ରୀ ଲୋକମାନେ ସମ୍ମାନ ଦେବା ପାଇଁ

Digitized by PPRACHIN, SOA

ବଧି ନ ଥିଲା । ନିଜ ଶାଶୁ ଶ୍ୱଶୁରଙ୍କୁ ମଧ୍ୟ ସେମାନେ ମୁଣ୍ଡନୁଆଇଁ ସମ୍ମାନ ଜଣାଉ ନ ଥିଲେ । ଆଜିକାଲି କିନ୍ତୁ ଅନ୍ୟମାନଙ୍କ ପ୍ରଭାବରେ ପ୍ରଭାବିତ ହୋଇ କନ୍ଧ ସ୍ତ୍ରୀ ଲୋକମାନେ ଗୁରୁଜନମାନଙ୍କୁ ହାତଯୋଡ଼ି ନମସ୍କାର କରିବା ଦେଖାଗଲାଣି ।

ଅତିଥି ଚର୍ଚ୍ଚା :—ଘରେ କୌଣସି ବନ୍ଧୁ ପହଞ୍ଚିଲେ କନ୍ଧ ପରିବାରରେ ପ୍ରଥମେ ତାହାଙ୍କୁ ନଆଁ, ଧୁଙ୍ଗିଆ (ଧୂଆଁପତ୍ର) ଦେଇ ପ୍ରାଥମିକ ଚର୍ଚ୍ଚା କରାଯାଏ । ଯେତେ ଗରିବ କନ୍ଧ ଲୋକଟିଏ ହେଲେବି ବନ୍ଧୁଙ୍କ ନିମନ୍ତେ ମଦ ଓ କୁକୁଡ଼ା ମାଂସର ବନ୍ଦୋବସ୍ତ କରିଥାଏ । ଏହା ସେମାନଙ୍କର ସହଜଲଭ୍ୟ ଦ୍ରବ୍ୟ । କାରଣ ଘରେ କୁକୁଡ଼ା ଥାଏ ଏବଂ ଗାଁରେ ସାଧାରଣତଃ ସଲପରସ ବା ମଦ ସୁବିଧାରେ ମିଳିଯାଏ ।

କୌଣସି ସରକାରୀ କର୍ମଚାରୀ ଗ୍ରାମରେ ପହଞ୍ଚିଲେ ଗ୍ରାମମୁଖିଆ ତାହାଙ୍କ ଚର୍ଚ୍ଚା ନିମନ୍ତେ ଗୁଡ଼ୁଳି, ଡାଲି ଓ କୁକୁଡ଼ା ପଠାଇଥାନ୍ତି । ଆଜିକାଲି ସରକାରୀ କର୍ମଚାରୀଙ୍କ ଦୌରାତ୍ମ୍ୟରେ ଅତିଷ୍ଠ ହୋଇ ଉକ୍ତ ପ୍ରଥାକୁ କନ୍ଧମାନେ କୋହଳ କରି ଦେଲେଣି ।

ମୋଟାମୋଟିଭାବେ ଅନୁଧ୍ୟାନ କଲେ କନ୍ଧ ସଂସ୍କୃତି ଓ ଆମ ହିନ୍ଦୁ ସଂସ୍କୃତି ଏକ ଓ ଅଭିନ୍ନ ପରି ପ୍ରତୀୟମାନ ହୁଏ ।

(ପ୍ରଗତିବାଦୀ ୨୫—୩—୯୦ରେ ପ୍ରକାଶିତ)



Digitized by PPRACHIN, SOA

# ଦୈନିକ ଚଳଣି

କୁକୁଡ଼ା ଡ଼କା ସମୟରେ (ପ୍ରାୟ ରାତି ଚାରିଟାବେଳକୁ) କନ୍ଧ ସ୍ତ୍ରୀ ଓ ପୁରୁଷ ଶଯ୍ୟାତ୍ୟାଗ କରିଥାନ୍ତି ।

କନ୍ଧ ପରିବାରଂରେ ଧାନଥିଲାବେଳେ ପ୍ରତିଦିନ ଧାନକୁଟି ସେହି ଦିନ ରାନ୍ଧିବା ନିମନ୍ତେ ଚାଉଳ କରାଯାଇଥାଏ । ଏଣୁ ଶଯ୍ୟାତ୍ୟାଗ କଲାପରେ କୁଇ ସ୍ତ୍ରୀ ଚୁଲ୍ଲୀରୁ ନିଆଁ ଖୁଣ୍ଟାଟିଏ ଆଣି ହଲାଇ ହଲାଇ, ତାର ଆଲୁଅରେ ପୂର୍ବ ଦିନରୁ ଶୁଖାଯାଇଥିବା ଧାନ ଗୋଟାଇ ଆଣି ବାକେଣି ଘରେ (ଯେଉଁ ଘରେ ବାକେଣି ବା ଧାନକୁଟା ଗାତଥାଏ) ଅନ୍ଧାରରେ କୁଟୁଣି (ହାତ ପାହୁରାଣି) ସାହାଯ୍ୟରେ ଧାନ କୁଟିଥାନ୍ତି । ଆଲୁଅ ହେଲା ବେଳକୁ ପ୍ରାୟ ଦୁଇ ତିନି ଗଉଣି ଧାନକୁଟା ଯାଇଥାଏ । ଏହି ସମୟରେ ପୁରୁଷ ଶ୍ରେଷ୍ଠ ପିଲାମାନଙ୍କ ଦାୟିତ୍ୱ ନେଇଥାଏ ।

ଧାନକୁଟା ସରିଲା ପରେ ସ୍ତ୍ରୀମାନଙ୍କ ଦାୟିତ୍ୱ ହେଲା ଘରଦ୍ୱାର ଓ ଗୁହାଳ ସଫା କରିବା । ଏହାପରେ ଗୋବର ପାଣି ଛେରା (କଡ଼ମୂଲ୍‌କା ଲାଷ୍ଠା) ଦେଇ ଗୋବର ପାଣିରେ ମକା ଶେପା (ମକାର ଉପର ପତ୍ର) ବୁଡ଼ାଇ ସମସ୍ତ ଘରଦ୍ୱାର ଘସିଥାନ୍ତି । ଏହିପରି ପ୍ରତିଦିନ ଘରଦ୍ୱାର ଘସିବା ଦ୍ୱାରା ଚଟାଣ ସିମେଣ୍ଟ ଚଟାଣ ପରି ଶକ୍ତ ଓ ଚକ୍‌ଚକ୍‌ କରୁଥାଏ ଏହାପରେ କୁକୁଡ଼ା ଛାଡ଼ିଥାନ୍ତି ଓ ଗାଈଗୋରୁ ନେଇ ଗୋଠରେ ଛାଡ଼ି ଆସନ୍ତି । ଘର ଘସିବା ନିମନ୍ତେ ମକାପତ୍ର ପୂର୍ବରୁ ସଂଗ୍ରହ କରି ରଖିଥାନ୍ତି । ଘରେ ଯୁବତୀ ଝିଅ ଥିଲେ ଏସବୁ କାମରେ ମାଆକୁ ସାହାଯ୍ୟ କରିଥାନ୍ତି ।

ଘରଘସା ସରିଲାବେଳକୁ ପ୍ରାୟ ପୂର୍ବାହ୍ନ ଘ ୬.୩୦ ସମୟ ହୋଇ ଯାଇଥାଏ । ଏହାପରେ ଚୁଆଁ ବା ନାଳକୁ ଯାଇ ଝାଡ଼ାଫିବା, ମୁହଁ ଧୋଇବା, ଦାନ୍ତ ଘଷିବା ଇତ୍ୟାଦି କାମସାରି ଅଣ୍ଟାପାଣି (କାନକାଃ ପା) କରିଥାନ୍ତି । ଏହି ସମୟରେ ସ୍ତ୍ରୀମାନେ ଡାବେଣି ବା ଅନ୍ତର୍ବାସ ଧୋଇଥାନ୍ତି । ସକାଳୁ ଉଠିବାକ୍ଷଣି ସେମାନେ ମୁହଁ ଧୋଇ ନ ଥାନ୍ତି ।

ଏହାପରେ ଉଭୟ ସ୍ତ୍ରୀ ଓ ପୁରୁଷ କାମକୁ ଯିବାକୁ ବାହାରିଥାନ୍ତି । ଯଦି କୃଷିକାମ ଥାଏ ଉଭୟେ କୃଷି ଜାଗାକୁ ଯାଆନ୍ତି । ଫଳମୂଳ

Digitized by PPRACHIN, SOA

ଇତ୍ୟାଦି ପାଇଁ ଜଙ୍ଗଲକୁ ଯିବା ଦରକାର ହେଲେ ପୁରୁଷ ଓ ସ୍ତ୍ରୀ ଅଲଗା ଅଲଗା ଯାଆନ୍ତି । କାରଣ ଆଜକାଲି ଜଙ୍ଗଲରେ ହିଂସ୍ର ଜନ୍ତୁ ଭୟ ପ୍ରାୟ ନାହିଁ କହିଲେ ଚଳେ । କିନ୍ତୁ ଅତୀତରେ ହିଂସ୍ର ଜନ୍ତୁ ଭୟଯୋଗୁଁ ଜଙ୍ଗଲକୁ ଗଲାବେଳେ ପୁରୁଷ ଓ ସ୍ତ୍ରୀ ଏକାଠି ଯାଉଥିଲେ । ଜଙ୍ଗଲକୁ ଗଲାବେଳେ ପୁରୁଷ ଧନୁଶର ଓ ଟାଙ୍ଗି ଧରି ଯାଇଥାଏ । ଆଜକାଲି ଶିକାର ମିଳୁ ନ ଥିବାରୁ କେବଳ ଟାଙ୍ଗିଧରି ଜଙ୍ଗଲକୁ ଯାଇଥାନ୍ତି । ସାଙ୍ଗରେ ପୋଷା କୁକୁର ଓ ପୋଷା ବାରୁହା ନେଇଯାଇଥାନ୍ତି । ସ୍ତ୍ରୀ ହାଣ୍ଡିରେ ପଖାଳ ଭାତ ଓ ଲାଉ ତୁମ୍ବାରେ ପାଣି ମୁଣ୍ଡରେ ବୋହି ଯାଇଥାନ୍ତି ।

ପ୍ରଭାତରେ କାମକୁ ବାହାରିଲାବେଳେ ପୁରୁଷ ସଲପଗଛ ନିକଟକୁ ଯାଇ ସେଠାରେ ଅନ୍ୟମାନଙ୍କସହ ସଲପରସ ପାନକରି ଯାଇଥାଏ ।

ଜଙ୍ଗଲକୁ ଯିବାବେଳେ ଶ୍ରେଷ୍ଠ ଛୁଆକୁ ବୁଢ଼ାବୁଢ଼ୀ କିମ୍ବା ଦଶ ବାର ବର୍ଷ ବୟସର ପୁଅଝିଅ ଯଦି ଥାଆନ୍ତି ତାହାଙ୍କ ହେପାଜତରେ ଛାଡ଼ି ଯାଇଥାନ୍ତି । କିନ୍ତୁ ଗୃହ କାମରେ ଯିବା ସମୟରେ ଶ୍ରେଷ୍ଠ ଛୁଆକୁ ବାମ କାଖରେ ବସାଇ ଏକ ଲୁଗାଦ୍ୱାରା ଡାହାଣ କାନ୍ଧସହ ବାନ୍ଧି ସଙ୍ଗରେ ନେଇଯାଆନ୍ତି । ବୁଢ଼ାବୁଢ଼ୀମାନେ ସାଧାରଣତଃ ଛୁଆ ଖେଳାଇବା ଓ ଘର ଜଗିବା କାମ କରିଥାନ୍ତି ।

ଜଙ୍ଗଲରୁ ଫଳମୂଳ ଓ ଶାଗ ଖାଦ୍ୟ ନିମନ୍ତେ ଓ ଅନ୍ୟାନ୍ୟ ଜଙ୍ଗଲଜାତଦ୍ରବ୍ୟ ବିକ୍ରି ନିମନ୍ତେ ସଂଗ୍ରହ କରିଥାନ୍ତି । ଜଙ୍ଗଲରେ ପ୍ରାୟ ୧୧/୧୨ ଘଣ୍ଟା ସମୟରେ ସଙ୍ଗରେ ନେଇଥିବା ପଖାଳ ଭାତ ଲୁଣ କିମ୍ବା ଲୁଣ ଲଙ୍କା ଦେଇ ଶିଆଳିପତ୍ର ଠୋଲରେ ଲାଉଡ଼ଙ୍କାରେ ବାଢ଼ି ଖାଇଥାନ୍ତି ତୁମ୍ବାରେ ନେଇଥିବା ପାଣି ପିଇଥାନ୍ତି ।

ମଧ୍ୟାହ୍ନ ପ୍ରାୟ ୧୨/୧ ଘଣ୍ଟା ସମୟରେ ସମସ୍ତେ ଜଙ୍ଗଲରୁ ଫେରିଥାନ୍ତି । ଫେରିଲାବେଳେ ଗାଧୋଇ ଘରକୁ ଫେରନ୍ତି । ଅତୀତରେ ପ୍ରାୟ କେହି ଗାଧୋଉ ନ ଥିଲେ । ବର୍ତ୍ତମାନ ପ୍ରାୟ ସମସ୍ତେ ଗାଧୋଉଛନ୍ତି । ପୁରୁଷ ଓ ସ୍ତ୍ରୀ ଅଲଗା ଅଲଗା ଗାଧୋଇଥାନ୍ତି । ଗାଧୋଇଲାବେଳେ ପିନ୍ଧାଲୁଗାଟି ବାହାରେ ଥୋଇ ଉଲଗ୍ନ ହୋଇ ଜଳରେ ପଶିଥାନ୍ତି । ସ୍ତ୍ରୀ କେବଳ ଡାବେଣି ବା ଅନ୍ତର୍ବାସଟି ପିନ୍ଧି ଗାଧୋଇଥାଏ ଓ

Digitized by PPRACHIN, SOA

ଢାବେଣିଟି ଧୋଇଥାଏ । ଝାଙ୍କର, ଝାଙ୍କରଣୀ ଓ ଦେହେର, ଦେହେରଣୀ ସକାଳୁ କାମକୁ ଯିବା ପୂର୍ବରୁ ଓ କାମରୁ ଫେରିଲାବେଳେ ବି ପୁଣି ଗାଧୋଇଥାନ୍ତି ।

ଜଙ୍ଗଲରୁ କନ୍ଧମାନେ ନିମ୍ନୋକ୍ତ ଜିନିଷ ସଂଗ୍ରହ କରିଥାନ୍ତି । ଖାଦ୍ୟ ନିମନ୍ତେ ବିଭିନ୍ନ କନ୍ଦା, ଫଳ ଓ ଶାଗ ସଂଗ୍ରହ କରିଥାନ୍ତି ।

କନ୍ଦା :—କନ୍ଦା ବା ମୂଳ ମଧ୍ୟରେ ନାପାକା (ମସିଆ କନ୍ଦା) ଲଏରି କୁନା, ମୂଳାକୁନା, (ଘାଟକନ୍ଦା) ମାଣ୍ଡିଡେରେକା (କରଡ଼ି ବା ବାଉଁଶ ଗଜା) କୁତ୍କା (ଛତୁ) ପାର୍ଟରିକା (ବାଲିଛତୁ) ଇତ୍ୟାଦି ସଂଗ୍ରହ କରିଥାନ୍ତି ।

ଶାଗ :—ଶାଗ (କୁସା) ମଧ୍ୟରେ ପ୍ରଧାନତଃ କରଡ଼ା ଶାଗ (କଅପୁ କୁସା) ଅରଗୁଣା ଶାଗ (ନାଟରଣି କୁସା) ଓ ବହଲ ଶାଗ (ବଦଲି କୁସା) ସଂଗ୍ରହ କରିଥାନ୍ତି ।

ଫଳ :—ଫଳ ମଧ୍ୟରେ କେନ୍ଦୁ (ମୂତୁଡ଼) ଚାର, କଞ୍ଚା ଓ ପାଚିଲା ଆମ୍ବ (ପିଲ୍ଲା ଓ ମାହା) ମହୁଲ (ଇରପି) ଡିମିରି (ଡୁମେରି) ଇତ୍ୟାଦି ସଂଗ୍ରହ କରିଥାନ୍ତି । ହଳିଆରି ଫଳ ବି ଖାଇବା ନିମନ୍ତେ ସଂଗ୍ରହ କରନ୍ତି ।

ଅନ୍ୟାନ୍ୟ ଦ୍ରବ୍ୟ ମଧ୍ୟରେ କାଠ, ଲାଖ, ଝୁଣା, ଶିଙ୍ଗ, ଚମଡ଼ା ଶିଆଳୀପତ୍ର ଓ ଲଇ, ତାଳଖଇର (ଘରଛପର ନିମନ୍ତେ) ଶାଳପତ୍ର, କାଗୁଲି (ସବାଇ) ଘାସ, କେନ୍ଦୁପତ୍ର, ଗେଣ୍ଡୁଲି ଅଠା ଇତ୍ୟାଦି ସଂଗ୍ରହ କରି ବିକ୍ରୟ କରିଥାନ୍ତି । ମହୁ ଓ ମହମ ମଧ୍ୟ ସଂଗ୍ରହ କରିଥାନ୍ତି । ଜଙ୍ଗଲରୁ ଟୋଲ (ମହୁଲ ଫଳ) କରଞ୍ଜ ଇତ୍ୟାଦି ଫଳ ସଂଗ୍ରହ କରି ତାର ମଞ୍ଜିରୁ ତେଲ ବାହାର କରି ବ୍ୟବହାର ନିମନ୍ତେ ରଖିଥାନ୍ତି ।

ଜଙ୍ଗଲରୁ ବା କୃଷିକାମରୁ ଫେରି କନ୍ଧ ସ୍ତ୍ରୀ ଭାତ ରାନ୍ଧେ । ରନ୍ଧା ସାରି ଶାଶୁ ଶ୍ୱଶୁର, ସ୍ୱାମୀ ଓ ପିଲାଙ୍କୁ ଖାଇବାକୁ ଦିଏ ଓ ନିଜେ ଖାଏ । ଶିଆଳୀ ପତ୍ର ଠୋଲିରେ ଖାଦ୍ୟ ପରିଷାଯାଏ । କେତେକ ସ୍ତ୍ରୀ ଝିଅଏ ଶାଳପତ୍ର ନେଇ ଗୁମଚ ପରି କରି ତାହା ଦ୍ୱାରା ଖାଦ୍ୟ ଖାଇଥାନ୍ତି

Digitized by PPRACHIN, SOA

ଓ ଖାଇବା ପରେ ହାତ ମୁହଁ ଧୋଇ ନଥାନ୍ତି । ଆନୁମାନିକ ୬ଘଣ୍ଟା/ସାଢ଼େ ୬ଘଣ୍ଟାବେଳେ ଖିଆ ସରେ । ଡେଂପର୍ବାଣୀରେ ପ୍ରଥମେ ବୟସ୍କ ପୁରୁଷ ଓ ସ୍ତ୍ରୀଙ୍କୁ ଖାଦ୍ୟ ପରିବେଷଣ କରାଯାଇଥାଏ ।

ଖାଇ ସାରିବା ପରେ ବି କନ୍ଧ ସ୍ତ୍ରୀ ବିଶ୍ରାମ ନେଇ ନଥାଏ । ଏହି ସମୟରେ ସ୍ତ୍ରୀ ଓ ଯୁବକ ଝିଅମାନେ ଶିଆଳୀ ଓ ଶାଳପତ୍ରରେ ଖଲି, ଚଉକନ ଓ ଠୋଲା ତିଆରି କରିଥାନ୍ତି । ଭବିଷ୍ୟତ ବ୍ୟବହାର ନିମନ୍ତେ ଠୋଲା ଓ ଚଉକନ ମାଳ କରି ଘରେ ରଖିଥାନ୍ତି । ବନ୍ଧୁବାନ୍ଧବ ଘରଭୋଜି ନିମନ୍ତେ ଘର ନେଲାବେଳେ ବି ଠୋଲା, ଚଉକନ ମାଳେ ଲେଖାଏଁ ନିଆ ହୋଇଥାଏ । ଖଲି ବିକ୍ରୀ କରି କିଛି ପଇସା ବି ରୋଜଗାର କରିଥାନ୍ତି । ଏହା ବ୍ୟତୀତ ଅବସର ସମୟରେ ଖଜୁରୀପତ୍ରରେ ପଟି ତିଆରି କରିବା ବି ସ୍ତ୍ରୀମାନଙ୍କ ଏକ କର୍ତ୍ତବ୍ୟ ।

ପୁରୁଷମାନେ ଅବସର ସମୟରେ ଦଉଡ଼ି ବଳିବା, ବାଡ଼ ବାନ୍ଧିବା, ଲଙ୍ଗଳ, ଜୁଆଳି ତିଆରି କରିବା, ଡ଼ଙ୍ଗା ତିଆରି, ଘର ତିଆରି ଇତ୍ୟାଦି କାର୍ଯ୍ୟ କରିଥାଆନ୍ତି ।

ଅପରାହ୍ନ ପ୍ରାୟ ପାଞ୍ଚଟା ବେଳକୁ ରାତ୍ରୀ ଭୋଜନ ପ୍ରସ୍ତୁତ ନିମନ୍ତେ କନ୍ଧ ସ୍ତ୍ରୀ ଲାଗିଯାଏ । ଭୋଜନ ପ୍ରସ୍ତୁତ ହେଲା ପରେ ଆନୁମାନିକ ସାତଟା ମଧ୍ୟରେ ରାତ୍ରି ଭୋଜନ ଶେଷ ହୋଇଥାଏ । ଖାଇବାବେଳେ ସାଧାରଣତଃ ନିଆଁ ଜାଳି ଆଲୁଅ କରାଯାଇଥାଏ । ବର୍ତ୍ତମାନ କେତେକ କନ୍ଧ ପରିବାର କିରୋସିନ ଡିବିରି ବା ଲ୍ୟାମ୍ପ ବ୍ୟବହାର କରିବା ଦେଖାଗଲାଣି ।

ରାତ୍ରି ଭୋଜନ ଶେଷ ହେଲାପରେ ଅବିବାହିତ ଝିଅମାନେ ଢାଙ୍ଗ୍ରୀଘର (Doramitory)କୁ ଶୋଇବାକୁ ଯାଇଥାନ୍ତି । ଅନ୍ୟ ଗ୍ରାମରୁ ଯୁବକମାନେ ଆସି ଯୁବତୀମାନଙ୍କୁ ନଚାଇବାକୁ ଚାହିଁଲେ ଧାଙ୍ଗଡ଼ାନାଚ ହୋଇ ଥାଏ ଓ ଗ୍ରାମର ପ୍ରାୟ ସମସ୍ତେ ଦେଖିବାକୁ ଯାଇଥାନ୍ତି । ନଚେତ୍ ଶୋଇ ଯାଇଥାନ୍ତି ।

ଦାଣ୍ଡଘରେ (ଗୁଡ଼ଘରେ) ଏକ ବଡ଼ ଖଜୁରୀପଟି ବିଛାଇ ଗୋଟିଏ କଡ଼େ ବାପା ଓ ଅନ୍ୟ କଡରେ ମାଆ ଶୋଇଥାନ୍ତି । ମାଆ ନିକଟରେ ସାନ ଛୁଆ ତା ପାଖରେ କ୍ରମଶଃ ବଡ଼ ଛୁଆ ଶୋଇଥାନ୍ତି ।

Digitized by PPRACHIN, SOA

ଝିଅ ପ୍ରାୟ ୧୧/୧୨ ବର୍ଷର ହୋଇଗଲା ପରେ ଦାଣ୍ଡଘର ବା ଧାଙ୍ଗିଡ଼ି ଘରକୁ ଶୋଇବାକୁ ଯାଇଥାଏ । ଲୁଗାପଟାର ସ୍ୱଳ୍ପତା ଦୃଷ୍ଟିରୁ ଯଟିରେ କୌଣସି ଲୁଗା ପକାଇ ନଥାନ୍ତି । ଘରେ ଥିବା ଖଣ୍ଡେ ଦୁଇଖଣ୍ଡ ଚଦର ସମସ୍ତଙ୍କ ଉପରେ ଘୋଡ଼ାଇ ଦିଆଯାଏ । ତା ଉପରେ ଖଜୁରୀ ପଟି ଘୋଡ଼େଇ ହୋଇଥାନ୍ତି । ହାଦଡଲେ ନିଆଁ (ନିଆଁ ଅଙ୍ଗାର) ଲଗିଥାଏ । ରାତିରେ ଉଠିଲେ ବା ଶୀତ ହେଲେ ନିଆଁ ପୋହାଁଥାନ୍ତି । ଖାଇ ସାରି ଶୋଇବା ପୂର୍ବରୁ ଗୀତ ଗାଇବା, ଗପ ଓ ଢ଼ଗ କହିବାକୁ ଓ ଶୁଣିବାକୁ ଭଲ ପାଉଥାନ୍ତି ।

ବୁଢ଼ାବୁଢ଼ୀ ଥିଲେ ସେମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ଶ୍ଳେଟଘର ତିଆରି କରାଯାଇଥାଏ । ସେମାନେ ସେହି ଘରେ ଶୋଇଥାନ୍ତି । ଅବିବାହିତ ଯୁବକମାନେ ଡ଼ାଙ୍ଗାଣିଡ଼ୁରେ ଶୋଇଥାନ୍ତି । ପ୍ରତ୍ୟେକ ଘରେ ଗୋଟିଏ ଲେଖାଏଁ ଖାଲଘର ଥାଏ । ପୁଅ ବିବାହ ହେଲା ପରେ ଉକ୍ତ ଘରେ ପୁଅ-ବୋହୂ ଶୋଇଥାନ୍ତି । ଯେଉଁଦିନ ଯାଏ ବୋହୂକୁ ରାନ୍ଧିବା ଅଧିକାର ଦିଆଯାଇ ନଥାଏ ସେହି ଦିନ ଯାଏ ପୁଅ ବୋହୂଙ୍କୁ ଖାଲଘର (ଡ଼ାଙ୍ଗାଣିଡ଼ୁ)ରେ ଶୋଉଥାନ୍ତି । ଶାଶୁ ଶ୍ୱଶୁର ଅଥର୍ବ ହେଲେ ବା କୌଣସି ଗୋଳମାଳ ସୃଷ୍ଟି ହେଲେ ବୋହୂକୁ ରାନ୍ଧିବା ଦାୟିତ୍ୱ ଦିଆଯାଉଥାଏ । ବୋହୂ ରାନ୍ଧିବା ଦାୟିତ୍ୱ ପାଇଲା ପରଠାରୁ ପୁଅ ବୋହୂ ମୁଖ୍ୟ ଘରର ଗୁଡ଼ି ଘରେ ଶୋଇଥାନ୍ତି ।

ସାଧାରଣତଃ କନ୍ଧ ପରିବାରର ଦୈନିକ ଜୀବନ ଯାତ୍ରା ଏହିପରି । ଶିକ୍ଷିତ ଯୁବକଗୁଡ଼ିଆ କନ୍ଧ ପରିବାରର ଚଳଣିରେ କିଛିଟା ଆଧୁନିକତାର ସଂକ୍ରମଣ ହେଲାଣି ।

(ତା ୫-୭-୯୦ ପ୍ରଗତିବାଦୀରେ ପ୍ରକାଶିତ)



Digitized by PPRACHIN, SOA

# କନ୍ଧ ସଂସ୍କୃତି ଓ ସଲପ ଗଛ

କନ୍ଧ ସଂସ୍କୃତିରେ ସଲପ ଗଛ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥାଏ । କନ୍ଧମାନଙ୍କ ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ଉକ୍ତ ଗଛର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି ।

ଗ୍ରାମ ସୀମା ମଧ୍ୟରେ ଯେଉଁଠାରେ ସଲପ ଗଛ ଥିଲେ ମଧ୍ୟ ତାହା ଗ୍ରାମର ସର୍ବସାଧାରଣଙ୍କ ସମ୍ପତ୍ତିଭାବରେ ପରିଗଣିତ ହୋଇଥାଏ । ଏପରିକି କୌଣସି ବ୍ୟକ୍ତିର ଅଧିକାରଭୁକ୍ତ ବାଡ଼ି ବା ଜମିରେ ଥିଲେ ମଧ୍ୟ ତାହା ଉପରେ ବ୍ୟକ୍ତିଗତ ମାଲିକାନା ସ୍ୱତ୍ୱ ପ୍ରବର୍ତ୍ତିତ ହୋଇପାରି ନଥାଏ । ବରଂ ତାହା ସମସ୍ତ ଗ୍ରାମବାସୀଙ୍କ ଅଧିକାରଭୁକ୍ତ ହୋଇଥାଏ ।

ସଲପ ଗଛକୁ କନ୍ଧମାନଙ୍କ କଥିତ ଭାଷା କୁଇରେ "ସାର୍ଗ୍ଗ ମ୍ରାହାନୁ" କହିଥାନ୍ତି । ଉକ୍ତ ଗଛର ଫଳ ବା ଶିଶାକୁ ସେମାନେ ଶିଙ୍ଗ କହିଥାନ୍ତି । ଶିଙ୍ଗ ବାହାରିଲା ପରେ ଯେ କୌଣସି ବ୍ୟକ୍ତି ଗ୍ରାମବାସୀଙ୍କ ଅନୁମତିକ୍ରମେ ଉକ୍ତ ଶିଙ୍ଗକୁ କାଟି ପାରନ୍ତି । ଶିଙ୍ଗ କାଟିବା ଦୁଇଦିନ ପରେ କଟା ସ୍ଥାନରୁ ଟୋପା ଟୋପା ହୋଇ ରସ ଝରିବା ଆରମ୍ଭ ହୁଏ । ପ୍ରତି ଦିନ କଟାଳି ଉକ୍ତ କଟା ସ୍ଥାନକୁ ଚେନାଇ ଚେନାଇ କାଟି କାଟି ଥାନ୍ତି । ପ୍ରାୟ ଏକ ସପ୍ତାହ ବେଳକୁ କଟା ସ୍ଥାନରୁ ଅଧିକ ପରିମାଣରେ ରସ ଝରିଥାଏ ଏବଂ ଉକ୍ତ ରସକୁ ଜମା କରି ରଖିବା ପାଇଁ ହାଣ୍ଡି ବନ୍ଧା ଯାଇଥାଏ । ଏହି ସମୟରେ ହାଣ୍ଡି ଭର୍ତ୍ତି ହେବାକୁ ଦୁଇରୁ ତିନିଦିନ ଲାଗିଥାଏ । କଟା ସ୍ଥାନକୁ ଚେନେଇ ଚେନେଇ କାଟିବା ପ୍ରାୟ ପନ୍ଦରଦିନ ଯାଏ ଚାଲିଥାଏ । ରସ ଝରିବା ପରିମାଣ କ୍ରମଶଃ ବଢ଼ି ଚାଲେ ଏବଂ ପନ୍ଦର ଦିନ ବେଳକୁ ଦିନକେ ପ୍ରାୟ ହାଣ୍ଡି ଭର୍ତ୍ତି ହେଲାଭଳି ରସ ଝରିଥାଏ । ଏହି ରସକୁ "ସାର୍ଗ୍ଗ କାଲୁ" ବା ସଲପ ମଦ କହିଥାନ୍ତି ।

ରସ ନିଶା ହେବା ନିମନ୍ତେ ରସ ହାଣ୍ଡିରେ କେତେକ ଚେର ପକାଇଥାନ୍ତି । ସେଗୁଡିକ ମଧ୍ୟରେ ପାଟେଲି (କେରୁଆଁ), ଆକଣି (ଆଙ୍କୁଲ), ସୁନାଖି (ଡ୍ରୁ ପୁଞ୍ଜେରି), ଡାକେରି ଚେର ପ୍ରଧାନ । ଉକ୍ତ ଚେର ମଧ୍ୟରୁ କୌଣସି ଗୋଟିଏ ଗଛର ଚେର ରସ ହାଣ୍ଡିରେ ପକାଇଲେ ରସ ନିଶା ହୋଇଥାଏ ।

Digitized by PPRACHIN, SOA

ସଲପ ଗଛର ରସ ବହଳା ନହେଲେ ବା ଅଳ୍ପ ହେଲେ ବା ଶୁଖି ଗଲେ ତାହା ନିମନ୍ତେ ବିଭିନ୍ନ ଉପଚାର କରାଯାଇଥାଏ । ରସ ବହଳ ହୋଇ ଚଳିବା ପରି ହେଲେ ଗଦଡ଼ୁକୁସା (ଗୁଡାରି ଶାଗ), ଭୂଇଁକଦମ୍ବ ଶାଗ, ଖଲଆ ଡାଳ ବା ମଞ୍ଜି ଗଛର ଯେ କୌଣସି ସ୍ଥାନରେ ଖୋସାଯାଏ । ଶିଙ୍ଗ ଶୁଖିଯାଇ ରସ ନଝରିଲେ କଟା ସ୍ଥାନରେ ଗୁଡ କିମ୍ବା ଲୁଣ ଓ ମରିଚ ଗୁଣ୍ଡ ମିଶାଇ ଘଷାଯାଏ । ଏହା ସତ୍ତ୍ୱେ ବି ଯଦି ରସ ଝରେ ନାହିଁ, ତେବେ ଶିଙ୍ଗରୁ କିଛି ଅଂଶ ନେଇ "କୁଜଠା" (ସନ୍ଧାନ ଜାଣିବା ନିମନ୍ତେ ଅବଲମ୍ବନ କରାଯାଉଥିବା ଏକ ପ୍ରଣାଳୀ) ଦେଖାଇ କୌଣସି ଦେବତା ବା ପିତୃପୁରୁଷଙ୍କ ଦ୍ୱାରା ଅନିଷ୍ଟ ହେଉଛି କି ନାହିଁ ଜାଣନ୍ତି । କୁଜଠା ଦ୍ୱାରା କୌଣସି ଦେବତାଙ୍କ ଦ୍ୱାରା ଅନିଷ୍ଟ ହୋଇଥିବା ଜଣାଗଲେ କାଞ୍ଜିଆ ଅଣ୍ଡା ମଦ ରୂପରେ ଦେଇ ପୂଜା କରି ସେମାନଙ୍କୁ ସନ୍ତୁଷ୍ଟ କରାଯାଏ । ଏହି ପୂଜା ଅଠର ମୂଠା (ଧୁ ଉଦୟଗିରି, ପାବୁରିଆ, ରାଇକିଆ) ଅଞ୍ଚଳରେ ଶିଙ୍ଗ ଉପରେ କରାଯାଇଥାଏ । କିନ୍ତୁ କାଡ଼ୁ (ଟିକାବାଲି ଶଙ୍କର ଖୋଲ) ଅଞ୍ଚଳରେ ଗଛ ମୂଳରେ ପୂଜା କରାଯାଇଥାଏ । କାହାରି କୁଚୁଣ୍ଡ ବା ଦୃଷ୍ଟି ପଡ଼ିଥିଲେ ଲଉଡ଼ିଙ୍କା (ପିତା ଲକା)ରେ ପାଣି ରଖି ନହିରି ଯାଏ ବା ପ୍ରବର୍ଦ୍ଧ କରାଯାଏ । ଗଛ ରୁଷି ଥିବାରୁ ଲନ୍ଦ ବାହାରୁ ନଥିଲେ "ମେଏଲ" ବା କ୍ଷମା ମାଗି ଗଛକୁ ସନ୍ତୁଷ୍ଟ କରାଯାଇଥାଏ ।

ଗୋଟିଏ ଗଛର ଦୁଇଟି ଶିଙ୍ଗ କାଟିଲା ପରେ ଉକ୍ତ ଗଛକୁ କାଟି ଦିଆଯାଇଥାଏ । ଉକ୍ତ ଗଛର ଗଣ୍ଡିକୁ ଫଡ଼ା କରି ଭିତରୁ ଶସ ବାହାର କରାଯାଇ ଗ୍ରାମର ସମସ୍ତ ପରିବାର ମଧ୍ୟରେ ବାଣ୍ଟି ଦିଆଯାଇଥାଏ । ଉକ୍ତ ଶସକୁ ଶୁଖାଇ କୁଟି ଗୁଣ୍ଡ କରି କନାରେ ଛାଣି ଭାତରେ ମିଶାଇ ଜାଉ କରାଯାଏ ବା ପିଠା କରି ଖିଆଯାଏ । ଶସ ବାହାର କଲା ପରେ ବକଳା-ଗୁଡ଼ିକ ଗୋରୁଗୁହାଳର ତଳେ ପକାଯାଏ ବା ବାଡ଼ରେ ବାଡ଼ ଦେବାରେ ବ୍ୟବହୃତ ହୋଇଥାଏ ।

ରସ କାଟିବା ଦିନଠାରୁ କେନାଥିବା ଏକ ଲମ୍ବା ବାଉଁଶ ଗଛ ଦେହରେ ବନ୍ଧାଯାଇଥାଏ । ଉକ୍ତ ବାଉଁଶରେ ଚଢ଼ି ରସହାଣ୍ଡି ବାନ୍ଧିବା ଓ ବାହାର କରିବା କରାଯାଇଥାଏ । ରସହାଣ୍ଡି ବନ୍ଧା ହେବା ଦିନଠାରୁ ଖୋଲା ହୁଏ ନାହିଁ । ଉକ୍ତ ହାଣ୍ଡିରୁ ଲଉତୁମ୍ବାରେ ରସ ଅଣାଯାଏ । ବନ୍ଧା ହେବା ହାଣ୍ଡିଠାରୁ ରସର ପରିମାଣ ଅଧିକ ହେଲେ କେବଳ ହାଣ୍ଡି ବଦଳ କରାଯାଇଥାଏ ।

Digitized by PPRACHIN, SOA

ପ୍ରତିଦିନ ସକାଳୁ କେତେ ପୁରୁଷ ପ୍ରାତଃକର୍ମ ସାରି ଦାନ୍ତ, ମୁହଁ ଧୋଇ କାମକୁ ଯିବା ପୂର୍ବରୁ ନିଜ ନିଜ ଗଛ ମୂଳକୁ ଯାଇଥାଏ । ଏହିପରି ଗ୍ରାମର ପ୍ରାୟ ସମସ୍ତ ପୁରୁଷ ଗଛ ମୂଳରେ ରୁଣ୍ଡ ହୁଅନ୍ତି । କାଟିଥିବା ବ୍ୟକ୍ତି ନ ଆସିବାଯାଏ ଅନ୍ୟ କେହି ଗଛରୁ ରସ ବାହାର କରି ନଥାନ୍ତି । କାଟିଥିବା ବ୍ୟକ୍ତି ଆସିଲେ ସେ ଗଛରୁ ରସ ବାହାର କରେ । ତାହାଙ୍କ ଅନୁପସ୍ଥିତିରେ ତାଙ୍କ ଦ୍ୱାରା ଅନୁମତିପ୍ରାପ୍ତ ବ୍ୟକ୍ତି ରସ ବାହାର କରିଥାନ୍ତି ।

ରସ ବାହାର କଲାପରେ ଉପସ୍ଥିତ ବ୍ୟକ୍ତିଙ୍କ ମଧ୍ୟରେ ଲାଉ ଡଙ୍କାରେ ସମାନଭାବରେ ରସ ବଣ୍ଟା ଯାଇଥାଏ । ଉପସ୍ଥିତ ବ୍ୟକ୍ତିଙ୍କ ମଧ୍ୟରୁ ବୟସ୍କ ବ୍ୟକ୍ତିଙ୍କଠାରୁ ରସ ବଣ୍ଟା ଆରମ୍ଭ କରାଯାଏ ଏବଂ ସେହି ବୟସ୍କ ବ୍ୟକ୍ତି ବା ତାଙ୍କଠାରୁ କିଛି କନିଷ୍ଠ ବ୍ୟକ୍ତିଠାରେ ରସ ବଣ୍ଟା ଶେଷ କରାଯାଏ । କୌଣସି ବ୍ୟକ୍ତି ଅଧିକ ରସ ପିଇବାକୁ ଚାହିଁଲେ ମଧ୍ୟ ଦିଆଯାଇ ନଥାଏ । ଯଦି ବାଣ୍ଟି ବାଣ୍ଟି କିଛି ରସ ବଳିଯାଏ ଏବଂ ସମସ୍ତଙ୍କୁ ଦେଲେ ଅଣ୍ଟିବାର ସମ୍ଭାବନା ନଥାଏ, ସେହି ରସ ସେଠାରେ ଉପସ୍ଥିତ ଥିବା ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କୁ ଦେଇ ରସ ଖିଆ ଶେଷ କରାଯାଏ । ରସ ପିଇ ଯଦି ସମସ୍ତଙ୍କୁ ନିଶା ଅଧିକ ହୋଇଯାଇଥାଏ ଏବଂ କିଛି ରସ ବଳକା ଥାଏ ତେବେ ଯଦି କେହି ଅଧିକା ଚାହେଁ, କେବଳ ସେହି କ୍ଷେତ୍ରରେ ତାହାକୁ କିଛି ଅଧିକ ରସ ଦିଆଯାଇଥାଏ । ରସ ପିଆ ଶେଷ ହେଲେ ଯେ ଯାହାର କାମକୁ ଚାଲିଯାନ୍ତି । ଏପରିଭାବରେ ସକାଳ, ମଧ୍ୟାହ୍ନ ଓ ସନ୍ଧ୍ୟାରେ ସଲପ ଗଛରୁ ରସ ବାହାର କରି ଖିଆ ଯାଇଥାଏ । ଯଦି କାହା ଘରକୁ ବନ୍ଧୁ ଆସି ଅବେଳରେ ପହଞ୍ଚନ୍ତି ଓ ନିହାତି ରସ ଦରକାର ହୁଏ ତେବେ ଏହି ନିୟମ ଭଙ୍ଗ କରି ଅନ୍ୟ ସମୟରେ ମଧ୍ୟ ରସ କଢ଼ାଯାଇ ପାରେ ।

ଗାଁର ଯଦି କାହାର କୁଣିଆ ଆସିଥାନ୍ତି ଓ ସଲପ ଗଛ ମୂଳକୁ ଯାଇଥାନ୍ତି କିମ୍ବା ନୂଆ ଲୋକ କେହି ଯାଇଥିଲେ ସମ୍ମାନସୂଚକଭାବରେ ସମସ୍ତଠାରୁ ତାହାକୁ ଏକଡଙ୍କା ରସ ଅଧିକ ଦିଆଯାଏ । ଯଦି ଗ୍ରାମର କାହାର କିଛି ମୁନାମୁନି ଥାଏ ଏବଂ ସେ କିଛି ସଲପ ରସ ନିମନ୍ତେ ଅନୁରୋଧ କରିଥାଏ, ଉକ୍ତ ଦିନ ସମସ୍ତେ କମ ରସ ପିଇ କିଛି ରସ ତାହାକୁ

Digitized by PPRACHIN, SOA

ଦେଇଥାନ୍ତି । ଏତଦ୍‌ବ୍ୟତୀତ ସଲପ ଗଛ ମୂଳରୁ ଗାଁ ମଧ୍ୟକୁ ରସ ନିଆଯାଇ ନଥାଏ । ଯାହାର ରସ ପିଇବା ଇଚ୍ଛା ନିର୍ଦ୍ଦିଷ୍ଟ ସମୟରେ ସେ ଗଛ ମୂଳକୁ ଯିବାକୁ ହୋଇଥାଏ ।

ପ୍ରତିଦିନ ଗଛରୁ ରସ ବାହାର କଲାବେଳେ କିଛି ରସ ଗଛ ମୂଳରେ ଢ଼ାଳି ଦିଆଯାଏ । ଯେଉଁଦିନ ପ୍ରଥମେ ନୂଆଁ କରି ରସ ବାହାର କରାଯାଏ, ଉକ୍ତ ଦିନ ମନ୍ତ୍ରପଢ଼ି କିଛି ରସ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଥୁଆ ଯାଇଥାଏ । ପ୍ରତିଦିନ ବ୍ୟକ୍ତିମାନେ ରସ ପିଇବା ପୂର୍ବରୁ କିଛି ରସ ମାଟିରେ ଢ଼ାଳିଥାନ୍ତି । ଏହା ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଢ଼ାଳାଯାଇଥାଏ ।

ରସ ପିଇବା ପାଇଁ ବ୍ୟକ୍ତିମାନେ ଗୋଟିଏ ଲେଖାଏଁ ଶାଳପତ୍ର ବ୍ୟବହାର କରିଥାନ୍ତି । ଗୋଟିଏ ଶାଳପତ୍ରକୁ ଦୁଇପଟରୁ ଚିପି ଏପରି ଧରନ୍ତି ଯେ ତାହା ଦନାଭଳି କାମ କରେ ଏବଂ ତାହା ମଧ୍ୟରେ ରସ ଢ଼ାଳି ପିଆଯାଇଥାଏ ।

ସଲପ ରସ ପିଇବା, ରସ କାଟିବା ଇତ୍ୟାଦି ନିମନ୍ତେ ଥିବା ସାମାଜିକ ନିୟମକୁ କେହି ଲଂଘନ କରିବା ଦେଖାଯାଏ ନାହିଁ । ଏଥିରୁ କନ୍ଧମାନେ ସାମାଜିକ ନିୟମ ମାନିବାରେ କେତେ ଶୃଙ୍ଖଳିତ ସହଜରେ ଅନୁମେୟ ।

ସଲପ ରସ କନ୍ଧମାନଙ୍କ ନିମନ୍ତେ ଏକାଧାରରେ ଖାଦ୍ୟ ଓ ପାନୀୟର ଭୂମିକା ନେଇଥାଏ । ବହୁ କନ୍ଧ ବ୍ୟକ୍ତି ସଲପ ରସ ପିଇ ଅନ୍ୟ କୌଣସି ଖାଦ୍ୟ ନଖାଇ ରହିଯାଉଥିବା ଦେଖାଯାଏ । ଗଛରୁ ରସ କାଟିବା ବନ୍ଦ ହେଲେ ଗଣ୍ଡିର ଶସ ମଧ୍ୟ ଖାଦ୍ୟରୂପରେ ବ୍ୟବହାର କରାଯାଇଥାଏ । ଗୋଟିଏ ସଲପ ଗଛ କଟାଗଲେ ଗୋଟିଏ ଗାଁର ପ୍ରାୟ ତିନି ଚାରି ମାସର ଖାଦ୍ୟ ଓ ପାନୀୟ ଅଭାବ ମେଣ୍ଟିଯାଇଥାଏ । ଏହା ବ୍ୟତୀତ ଗଛର ବକଳକୁ ବାଡ଼ ଦେବା ବା ଗୃହାଳରେ ପକାଇବାରେ ବ୍ୟବହୃତ ହୋଇଥାଏ । ପୂଜା ପୂଜରେ ମଧ୍ୟ ସଲପ ରସର ବ୍ୟବହାର ହୋଇଥାଏ ।

ଉପରୋକ୍ତ ଆଲୋଚନାରୁ କନ୍ଧ ସମାଜର ସାମାଜିକ ଓ ଅର୍ଥନୈତିକ କ୍ଷେତ୍ରରେ ସଲପ ଗଛର ଭୂମିକା କେତେ ଗୁରୁତ୍ୱପୂର୍ଣ୍ଣ ସହଜରେ ଅନୁମେୟ ।

(ତା ୮-୧୦-୮୯ରିଖ ପ୍ରଗତିବାଦୀ ସ୍ୱତନ୍ତ୍ର ପୃଷ୍ଠାରେ ପ୍ରକାଶିତ)

Digitized by PPRACHIN, SOA

# କନ୍ଧମାଳରେ ଶିକ୍ଷାପ୍ରସାର

ବର୍ତ୍ତମାନର ବାଲିଗୁଡ଼ା ଓ କନ୍ଧମାଳ ଉପଖଣ୍ଡ ମଧ୍ୟରୁ କନ୍ଧମାଳ ୧୮୫୫ ଯାଏ ବୌଦ ରାଜାଙ୍କ ଶାସନାଧୀନ ଥିଲା ଏବଂ ୧୮୫୫ରେ ବ୍ରିଟିଶ ସରକାରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନକୁ ନିଆଗଲା । ୧୮୩୬ରେ ବ୍ରିଟିଶ ସରକାର ଘୁମୁସର ଦଖଲ କରିବା ପରଠାରୁ ଘୁମୁସର ଉଦୟଗିରି ସମେତ ସମସ୍ତ ବାଲିଗୁଡ଼ା ଉପଖଣ୍ଡ ବ୍ରିଟିଶ ସରକାରଙ୍କ ଅଧୀନକୁ ଚାଲିଗଲା । ଦୁଇଜଣ ଦୋରା ବିଷୋୟୀ ଓ ଚକ୍ର ବିଷୋୟୀ ଯଦି ବ୍ରିଟିଶ ଶାସନ ବିରୁଦ୍ଧରେ ବିଦ୍ରୋହ କରି ନ ଥାନ୍ତେ ତେବେ ବ୍ରିଟିଶ ଅଧିକାରୀମାନେ ବାଲିଗୁଡ଼ା ଓ କନ୍ଧମାଳ ଅଞ୍ଚଳକୁ ଆସିବାରେ ଆହୁରି ବିଳମ୍ବ ହୋଇଥାନ୍ତା ।

ଦୋରା ବିଷୋୟୀ ଓ ଚକ୍ର ବିଷୋୟୀଙ୍କ ନେତୃତ୍ୱରେ ଘୁମୁସରର ପାର୍ବତ୍ୟାଞ୍ଚଳ (ୟୁ ଉଦୟଗିରି ତହସିଲ)ରେ ବିଦ୍ରୋହାଗ୍ନି ପ୍ରଜ୍ୱଳିତ ହେଲା । ଉକ୍ତ ବିଦ୍ରୋହ ଦମନ କରିବା ନିମନ୍ତେ ଘୁ: ଉଦୟଗିରି ଅଞ୍ଚଳରେ ବ୍ରିଟିଶ ଅଧିକାରୀମାନଙ୍କ ଆବିର୍ଭାବ ହେଲା । ଫଳରେ ସେମାନେ ଉକ୍ତ ଅଞ୍ଚଳର ଅଧିବାସୀ କନ୍ଧ ଓ ପାଣମାନଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସି ସେମାନଙ୍କ ଅନୁନ୍ନତ ସଂସ୍କୃତି ଅଧ୍ୟୟନର ସୁଯୋଗ ପାଇଲେ ।

ତେଣୁ ସେହି ଅଞ୍ଚଳର ଅଧିବାସୀଙ୍କୁ ପାଶ୍ଚାତ୍ୟ ପଦ୍ଧତିରେ ଶିକ୍ଷାଦାନ ଦେଇ, ଶିକ୍ଷିତ କରାଇ ସେମାନଙ୍କ ସଂସ୍କୃତି ମଧ୍ୟରୁ ବିଭତ୍ସ ନରବଳି ପରି ଘୃଣ୍ୟ ପ୍ରଥାର ବିଲୋପ ସଙ୍ଗେ ସଙ୍ଗେ ବ୍ରିଟିଶ ସରକାରଙ୍କ ଅନୁଗତ କରାଇବାର ଚିନ୍ତାକଲେ । ୧୮୪୫ ସାଲରେ ସାର୍ ହେନେରି ପୋଟିଞ୍ଜର (Sir Henry Pottinger)ଙ୍କ ପ୍ରଚେଷ୍ଟାରେ ଏବଂ ମାଡ୍ରାସ ପ୍ରାଦେଶିକ ସରକାରଙ୍କ ଶିକ୍ଷାବିଭାଗ ଆନୁକୂଲ୍ୟରେ ଘୁମୁସରରେ ଛଅ ଗୋଟି ପ୍ରାଥମିକ ବିଦ୍ୟାଳୟ ସ୍ଥାପନ କରିବା ପାଇଁ ନିଷ୍ପତ୍ତି ନିଆଗଲା । ସେଥିରୁ ତିନ ଗୋଟି ଘୁମୁସରର ସମତଳ ଅଞ୍ଚଳରେ ଓ ଅନ୍ୟ ତିନୋଟି ପାର୍ବତ୍ୟାଞ୍ଚଳରେ ଖୋଲାଗଲା । ୧୮୫୧ରେ କନ୍ଧମାନଙ୍କୁ ଶିକ୍ଷାଦାନ ଦେବା ନିମନ୍ତେ କ୍ୟାପଟେନ୍ ମାକ୍ ଭିକାର (Captain Mac Viccar)ଙ୍କ ସିଦ୍ଧାନ୍ତ ଅନୁଯାୟୀ ଉକ୍ତ ସ୍କୁଲଗୁଡ଼ିକ ବାଲିଗୁଡ଼ା ଉପଖଣ୍ଡର କୁର୍ମିଙ୍ଗିଆ, ଘୁ: ଉଦୟଗିରି

Digitized by PPRACHIN, SOA

ଓ ମହାସିଙ୍ଗିରେ ପ୍ରତିଷ୍ଠା କରାଗଲା ଏବଂ ଓଡ଼ିଆ ଭାଷା ମାଧ୍ୟମରେ ଶିକ୍ଷାଦାନ କରାଗଲା । "ପାଠ ପଢ଼ିଲେ ଅକ୍ଷର ଦେବତା କ୍ଷେପିପଡ଼ିବ" ବୋଲି ଅନ୍ଧ ବିଶ୍ୱାସର ବଶବର୍ତ୍ତୀ ହୋଇ ଗୋରମୁଠା (ଟିକାବାଦୁ ଖଣ୍ଡମ) ଅଠର ମୁଠାଁ (ଘୁ. ଉଦୟଗିରି ଅଞ୍ଚଳ) ହାଟଙ୍ଗି (ନିକାବାଲି ଅଞ୍ଚଳ)ର କନ୍ଧ ଓ ପାଣ-ମାନେ ଉକ୍ତ ସ୍କୁଲଗୁଡ଼ିକୁ ପିଲାଙ୍କୁ ପଢ଼ିବା ପାଇଁ ଛାଡ଼ିଲେ ନାହିଁ । ଫଳରେ ସ୍କୁଲଗୁଡ଼ିକର ଅବସ୍ଥା ଶୋଚନୀୟ ହୋଇ ପଡ଼ିଲା । ଏଣୁ ପୋଲିସ ଦ୍ୱାରା ବଳ ପ୍ରୟୋଗ କରି ଛାତ୍ରମାନଙ୍କୁ ସ୍କୁଲକୁ ଆଣିବାର ବ୍ୟବସ୍ଥା ସରକାର ଗ୍ରହଣ କଲେ ।

ଏହା ସତ୍ତ୍ୱେ ବି ପାର୍ବତ୍ୟାଞ୍ଚଳ ସ୍କୁଲଗୁଡ଼ିକ ୧୮୫୪ ଯାଏ ଶିକ୍ଷାଦାନରେ ଉତ୍କର୍ଷ ଅଗ୍ରଗତି କରି ପାରିଲା ନାହିଁ । ଏଣୁ ସରକାର ଶିକ୍ଷକମାନଙ୍କ ଦରମା ୧୯୯ ଟଙ୍କାରୁ ପଚିଶ ଟଙ୍କାକୁ ବଢ଼ାଇଦେଲେ ଏବଂ ଶିକ୍ଷାର ଉନ୍ନତି ନିମନ୍ତେ ଶିକ୍ଷଣ ନଜର ଦେଲେ । ଏହା ଦ୍ୱାରା କିଛିଟା ସୁଫଳ ମିଳିଲା । ୧୮୫୫-୫୭ରେ ଘୁମୁସରର ପାର୍ବତ୍ୟାଞ୍ଚଳରେ ପୁଣି ଗୁରି ଗୋଟି ବିଦ୍ୟାଳୟ ପ୍ରତିଷ୍ଠା କରାଗଲା ଓ ରସେଲକୋଣ୍ଡାର, ଆସିଷ୍ଟାଣ୍ଟ ଏଜେଣ୍ଟ (Assistant Agent for the Meriah Agency, Russelkonda)ଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପରିଚାଳିତ କରାଗଲା ।

ତାଲିମପ୍ରାପ୍ତ ଶିକ୍ଷକ ଅଭାବ ଦୂର କରିବା ପାଇଁ ୧୮୫୭ରେ ରସଲକୋଣ୍ଡା (ବର୍ତ୍ତମାନର ଭଞ୍ଜନଗର)ଠାରେ ଏକ ଗୁରୁତାଲିମ ବିଦ୍ୟାଳୟ ପ୍ରତିଷ୍ଠା କରାଗଲା । ଏବଂ ତାଲିମପ୍ରାପ୍ତ ଶିକ୍ଷକମାନଙ୍କୁ ସ୍କୁଲଗୁଡ଼ିକରେ ନିଯୁକ୍ତ ଦିଆଗଲା । ୧୮୫୪ ଶିକ୍ଷା କମିଟିଙ୍କ ସୁପାରିଶ ଅନୁଯାୟୀ ସ୍କୁଲଗୁଡ଼ିକରେ ଉଭୟ ଇଂରାଜୀ ଓ ମାତୃଭାଷା ମାଧ୍ୟମରେ ଶିକ୍ଷାଦାନ ଆରମ୍ଭ କରାଗଲା । ଛାତ୍ରମାନଙ୍କୁ ଇତିହାସ, ଭୂଗୋଳ, ଗଣିତ, ମାତୃଭାଷା ଓ ଇଂରାଜୀ ବାଧ୍ୟତା-ମୂଳକ ବିଷୟଭାବେ ଶିକ୍ଷା ଦିଆଗଲା । ଏହା ସହିତ ଜ୍ୟୋତିଷ ଓ ହିତୋ-ପଦେଶ ମଧ୍ୟ ପଢ଼ା ଯାଉଥିଲା ।

କ୍ରମାଗତ ସରକାରୀ ଉଦ୍ୟମ ଫଳରେ ୧୮୭୦ ସାଲବେଳକୁ ବିଦ୍ୟାଳୟଗୁଡ଼ିକର ଅବସ୍ଥାରେ ସନ୍ତୋଷଜନକ ଉନ୍ନତି ଦେଖାଗଲା । ସେହି ବର୍ଷ ପାର୍ବତ୍ୟାଞ୍ଚଳ ବିଦ୍ୟାଳୟଗୁଡ଼ିକରେ ୫୨୧ ଜଣ ଛାତ୍ର ଥିଲେ ଏବଂ

Digitized by PPRACHIN, SOA

ଯେଉଁଥିରୁ ଅଧିକାଂଶ ଛାତ୍ରଥିଲେ କନ୍ଧ ଓ ପାଣ । ବ୍ରାହ୍ମଣ ପଦର, ଶଙ୍କର-ଖୋଲ ଓ ପୁରୁଣାଗଡ଼ ସ୍କୁଲଗୁଡିକରେ ସମତଳ ଅଞ୍ଚଳ ପରି ପର୍ଯ୍ୟାପ୍ତ ଜଣ ଛାତ୍ରଥିଲେ ଓ ଶିକ୍ଷାଦାନ ସନ୍ତୋଷଜନକ ଥିବା ଜଣାଯାଏ ।

କନ୍ଧମାଳରେ ୧୮୫୫ଠାରୁ ୧୮୮୦ ମଧ୍ୟରେ ଗୁଡ଼ିଏ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ କରାଗଲା । ପ୍ରାରମ୍ଭିକ ସ୍ତରରେ ଫୁଲବାଣୀ ସଦର, ଖଜୁରିପଡ଼ା, ଟିଟାପଙ୍ଗା ଓ ରଡଙ୍ଗଠାରେ ନିମ୍ନ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା କରାଗଲା । ପରେ ରଡଙ୍ଗ ସ୍କୁଲ ବଣିପଡ଼ାକୁ ସ୍ଥାନାନ୍ତରିତ କରାଗଲା । ୧୮୬୮ ସାଲରେ ଉକ୍ତ ସ୍କୁଲଗୁଡିକୁ ଉଚ୍ଚ ପ୍ରାଥମିକ ସ୍କୁଲ କରାଗଲା ଓ ବଣିପଡ଼ା ସ୍କୁଲକୁ ମାଧ୍ୟମିକ ଭର୍ଣ୍ଣାକୁଲାର ସ୍କୁଲ କରାଗଲା । ୧୯୦୪ ସାଲରେ ବଣିପଡ଼ାଠାରୁ ଉକ୍ତ ସ୍କୁଲକୁ ଫୁଲବାଣୀକୁ ଉଠାଇ ନିଆଗଲା ଓ ୧୯୨୭ରେ ତାହାକୁ ମଧ୍ୟ ଇଂରାଜୀ ବିଦ୍ୟାଳୟ ଓ ୧୯୪୬ରେ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ କରାଗଲା ।

କନ୍ଧମାଳରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ନ ଥିବାରୁ ୧୯୨୭ ସାଲଠାରୁ ଜିଲ୍ଲାସଦର ମହକୁମା ଅନୁଗୁଳକୁ ଯାଇ ଛାତ୍ରମାନେ ଅଧ୍ୟୟନ କରୁଥିଲେ । ୧୯୦୪ ସାଲରେ ଶିକ୍ଷକମାନଙ୍କୁ ତାଲିମ ଦେବା ନିମନ୍ତେ ଏକ ଗୁରୁତାଲିମ ବିଦ୍ୟାଳୟ ପ୍ରତିଷ୍ଠା କରାଯାଇଥିଲା । ୧୯୩୬ରେ କନ୍ଧମାଳକୁ ଅନୁଗୁଳ ଜିଲ୍ଲାରୁ ଅଣାଯାଇ ଗଞ୍ଜାମ ଜିଲ୍ଲା ସହିତ ମିଶାଇ ଦିଆଯିବାରୁ କନ୍ଧମାଳର ଛାତ୍ରମାନେ ଅଧ୍ୟୟନ ନିମନ୍ତେ ଅନୁଗୁଳ ନ ଯାଇ ଘୁ. ଉଦୟଗିରି ହବାକ ହାଇସ୍କୁଲରେ ପଢ଼ିବାକୁ ଲାଗିଲେ ।

୧୯୦୮ ସୁଦ୍ଧା ସମଗ୍ର କନ୍ଧମାଳରେ ବାରଗୋଟି ନିମ୍ନପ୍ରାଥମିକ ବିଦ୍ୟାଳୟ ଥିବା ଅନୁଗୁଳ ଜିଲ୍ଲା ଗେଜେଟିଅରରୁ ଜଣାଯାଏ । ପ୍ରତ୍ୟେକ ସ୍କୁଲରେ କନ୍ଧ ଶିକ୍ଷକ ନିଯୁକ୍ତ ହୋଇଥିଲେ ମଧ୍ୟ ଓଡ଼ିଆ ମାଧ୍ୟମରେ ଶିକ୍ଷା-ଦାନ କରାଯାଉଥିବାରୁ କନ୍ଧଛାତ୍ରମାନେ ଓଡ଼ିଆ ବୁଝିପାରୁ ନ ଥିଲେ । ଏଣୁ ଶିକ୍ଷାଦାନର ଅଗ୍ରଗତି ବ୍ୟାହତ ହେଉଥିଲା । ଏହା ଲକ୍ଷ୍ୟକରି ତତ୍କାଳୀନ କନ୍ଧମାଳର ସବଡିଭିଜନାଲ ଅଧିକାରୀ ଓ. ଜେ. ଆଲେନବ୍ୟାତ ରୋମାନ ଅକ୍ଷର ବ୍ୟବହାର କରି କୁଇ ଭାଷାରେ ପାଠ୍ୟପୁସ୍ତକ ପ୍ରଣୟନ କରାଇଥିଲେ ଏବଂ ସେହି ଅଞ୍ଚଳରେ ଚାକିରି କରୁଥିବା କର୍ମଚାରୀମାନଙ୍କୁ କୁଇଭାଷା ଶିକ୍ଷା କରିବାକୁ ଉତ୍ସାହିତ କରାଇଥିଲେ ।

Digitized by PPRACHIN, SOA

ବାଲିଗୁଡ଼ା ସବଡିଭିଜନର ୧୮୮୯ଠାରୁ ୧୯୦୦ ସାଲ ମଧ୍ୟରେ ସୁବର୍ଣ୍ଣଗିରି, କୋଟଗଡ଼, ତୁମୁଡ଼ିବନ୍ଧ, ବେଲଘର, ମୁଣ୍ଡିଗଡ଼, ବୁଡ଼ାଗୁଡ଼ା, ବାଲିଗୁଡ଼ା, ବାରଙ୍ଗମା, ମେଣଖୋଲ ଓ ଲଣ୍ଡଗାଁ ଇତ୍ୟାଦି ଅଗମ୍ୟ ଅଞ୍ଚଳରେ କେତୋଟି ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା କରି ଆଦିବାସୀ ଓ ହରିଜନ ଛାତ୍ରମାନଙ୍କୁ ଶିକ୍ଷା ଦେବାର ବ୍ୟବସ୍ଥା କରାଗଲା ।

ଘଟଣାଇ ଉଦ୍ୟମରେ ବିଦ୍ୟାଳୟ ସ୍ଥାପନର ମଧ୍ୟ ବ୍ୟବସ୍ଥା ସରକାର କରିଥିଲେ । ତେଣୁ ରୋମାନ୍ କ୍ୟାଥଲିକ ଓ ବାପ୍ଟିଷ୍ଟ ଉଭୟ ସଂସ୍ଥାର ଖ୍ରୀଷ୍ଟିୟାନ ମିଶନେରୀମାନେ ବି ତାହାର ସୁଯୋଗ ନେଲେ । ୧୯୧୪ ସାଲରେ ମିଶନେରୀ ଉଦ୍ୟମରେ ଜି: ଉଦୟଗିରିଠାରେ ଏକ ମଧ୍ୟ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରାଗଲା । ୧୯୩୯ରେ ଟିକାବାଲିଠାରେ ସରକାରୀ ଉଦ୍ୟମରେ ଏକ ଉଚ୍ଚଇଂରାଜୀ ବିଦ୍ୟାଳୟ ସ୍ଥାପନ କରାଗଲା ଓ ତାହା ୧୯୪୪ରେ ଜି: ଉଦୟଗିରିକୁ ସ୍ଥାନାନ୍ତରିତ କରାଗଲା । ସେହି ସମୟରେ ସ୍କୁଲଗୁଡ଼ିକରେ ଯୀଶୁ ଖ୍ରୀଷ୍ଟଙ୍କ ପ୍ରାର୍ଥନା କରାଯାଉଥିଲା । ଏଣୁ କନ୍ଧ ଛାତ୍ରମାନେ ସେଠାରେ ପଢ଼ିବାକୁ ଅନିଚ୍ଛା ପ୍ରକାଶ କରୁଥିବା କଳିଙ୍ଗାର ଶ୍ରୀ ସନ୍ତୋଷନାରାୟଣ ଜେନା (ବର୍ତ୍ତମାନ ନିଖିଳ ଭାରତ କୁଇ ସମାଜ ସୁନାଅନ ସାଧାରଣ ସମ୍ପାଦକ)ଙ୍କଠାରୁ ଏଇ ଲେଖକ ଶୁଣିଛନ୍ତି ।

ଯାହା ହେଉ ଧୀରେ ଧୀରେ କନ୍ଧମାଳ ଓ ବାଲିଗୁଡ଼ାରେ ଶିକ୍ଷାପ୍ରସାର ଘଟିଲା । ବର୍ତ୍ତମାନ ସରକାରୀ ଓ ବେସରକାରୀ ପ୍ରଚେଷ୍ଟାରେ ବହୁ ଉଚ୍ଚଇଂରାଜୀ ବିଦ୍ୟାଳୟ ତଥା ମହାବିଦ୍ୟାଳୟ ପ୍ରତିଷ୍ଠିତ ହେଲାଣି ଓ ବହୁ ଛାତ୍ର ଉଚ୍ଚଶିକ୍ଷା ଲାଭକରି ଉଚ୍ଚସରକାରୀ ଚାକିରୀରେ ପ୍ରବେଶ କଲେଣି । ବର୍ତ୍ତମାନ ଶିକ୍ଷାକ୍ଷେତ୍ରରେ ସେତେବେଳର ଅସହାୟ ପରିସ୍ଥିତି ଆଉ ନାହିଁ ।

## ସହାୟକ ଗ୍ରନ୍ଥସୂଚୀ


Behera, D—Freedom Movement in the State of Ghumusur in Orissa—Calcutta. 1931

Senapati, N.—Gazetteer of Orissa Baudh—Phulbani District 1983 Cuttack

୩. ମଲିକ, ମହେନ୍ଦ୍ରନାଥ—କନ୍ଧ ଓ କନ୍ଧମାଳ (ଅରଣ୍ୟ – ୩, ୧୯୮୮ରେ ପ୍ରକାଶିତ)


Digitized by PPRACHIN, SOA

# ମାଛଧରା ପ୍ରଣାଳୀ

କନ୍ଧମାନଙ୍କ ଖାଦ୍ୟ ମଧ୍ୟରେ ଅନ୍ୟାନ୍ୟ ଖାଦ୍ୟମାନଙ୍କ ସହ ମାଛ ମଧ୍ୟ ଅର୍ନ୍ତଭୁକ୍ତ । ସୁଦୀର୍ଘ ଅତୀତରେ ସେମାନେ ମାଛକୁ ଖାଦ୍ୟଭାବେ ବ୍ୟବହାର କରି ଜାଣିଥିଲେ କି ନାହିଁ କହିବା ହୁଏତ ସମ୍ଭବ ନୁହେଁ, ମାତ୍ର ମାଂସହିଁ ଥିଲା ସେମାନଙ୍କର ସବୁ ପ୍ରଥମ ଓ ପ୍ରିୟ ଖାଦ୍ୟ । ଏବେବି ମାଂସ ସେମାନଙ୍କର ପ୍ରିୟ ଖାଦ୍ୟ ଏବଂ ମାଛ ତା ତୁଳନାରେ କିଛି କମ୍ ପ୍ରିୟ ଖାଦ୍ୟ ବୋଲି କୁହାଯାଇ ନପାରେ ।

କନ୍ଧମାଳର ହାଟ ଓ ବଜାରମାନଙ୍କରେ ଶୁଖୁଆ ପସରା ବହୁ ପରିମାଣରେ ବସିଥିବା ଓ କନ୍ଧମାନେ ଆଗ୍ରହ ସହକାରେ ତାହା କିଣି ନେଉଥିବା ଦେଖିବାକୁ ମିଳେ । ସାଧାରଣତଃ ହାଟ ବଜାରରେ ସମୁଦ୍ର ମାଛର ଶୁଖୁଆ ବିକ୍ରି ହୋଇଥାଏ । ଏଥିରୁ କନ୍ଧମାନଙ୍କ ମାଛ ଓ ଶୁଖୁଆ ପ୍ରତି ଥିବା ଆଗ୍ରହ ପ୍ରକଟିତ ହୋଇଥାଏ ।

କୁଇ ଭାଷାରେ ମାଛକୁ ମିନକା କୁହାଯାଏ । କୁଇ ଭାଷାରେ ବିଭିନ୍ନ ମାଛଗୁଡ଼ିକର ନାମ ହେଲା— ପୀତା ମୀନୁ (କେରାଣ୍ଡି) ମୁଣ୍ଡମୀନୁ ବା ସୁଟେଲର ମୀନୁ (ତୋଡ଼ମାଛ), ମାଗରେ (ମାଗୁର), ପାଜବୃତ (ଦଣ୍ଡିକିରି) ତ୍ରୁ କମୀନ୍ନୁ (ଗଡ଼ଙ୍ଗ ବାଟେଂଗ ମାଛ), ସୁଡ୍ରି ମୀନୁ (ଶିର୍ଙ୍ଗି ମାଛ), ସିଙ୍ଗାଣି ମୀନୁ (ଚିଙ୍ଗୁଡ଼ି ମାଛ), ବଠୁ ମୀନୁ (ବାଲିଗରଡ଼ା ମାଛ) ଇତ୍ୟାଦି । ଶେଉଳ, ରୋହି, ଭାକୁର, ପବଚଟା, ସେରେଣା, ବାଉଁଶପତ୍ରୀ ଓ ବାଳିଆ ଇତ୍ୟାଦି ମାଛମାନଙ୍କ ନିମନ୍ତେ କୁଇ ଭାଷାରେ ସ୍ୱତନ୍ତ୍ର ନାମ ନାହିଁ ।

ନଦୀ, ନାଳ, ଗଡ଼ିଆ, ବନ୍ଧ, ବିଲ ଓ ପୋଖରୀମାନଙ୍କରୁ କୁଇ ପୁରୁଷ ଓ ବାଳକମାନେ ମାଛ ମାରିଥାନ୍ତି । ମାଛ ମାରିବା ନିମନ୍ତେ ସେମାନେ ବିଭିନ୍ନ ଉପାୟ ଅବଲମ୍ବନ କରିଥାନ୍ତି । ସେଥିରୁ କେତେକ ଉପାୟ ନିମ୍ନରେ ବର୍ଣ୍ଣିତ ହେଲା । କନ୍ଧମାନଙ୍କ ପରି ମଧ୍ୟ ପ୍ରଦେଶର ମୁରିଆ-ମାନେ ପ୍ରତିଦିନ ମାଛ ଧରିବାକୁ ଭଲ ପାନ୍ତି ଏବଂ ମୁରିଆ ଗ୍ରାମରେ ବିଭିନ୍ନ ମାଛ ଧରା ଉପକରଣ ଦେଖିବାକୁ ମିଳେ ।

Digitized by PPRACHIN, SOA

୧ — କୁମୁଣା ବସାଇ :— କୁମୁଣାକୁ କୁଇ ଭାଷାରେ ଗୁଡ଼େଲ କୁହାଯାଏ । ପ୍ରଥମେ ବାଉଁଶ କାଠି ଓ ଦଉଡ଼ିରେ ବୁଣି ପଟି ପର କରାଯାଏ । ସରୁ ଛୋଟ ବାଉଁଶ କାଠିକୁ ଦଉଡ଼ିରେ ବୁଣି ଗୋଲ କରାଯାଇ ପୂର୍ବ ପ୍ରସ୍ତୁତ ଲମ୍ବା ବାଉଁଶ କାଠି ପଟିର ଗୋଟିଏ ମୁଣ୍ଡରେ ବାନ୍ଧି ଦିଆଯାଏ । ଅପର ପାଖଟି ଖୋଲାଥାଏ । ଗଞ୍ଜାମରେ ଏହାକୁ ବେନ୍ଦା ଓ କଟକ ପୁରୀ ଜିଲ୍ଲାରେ ଏହାକୁ ମୁଗୁରା କହିଥାନ୍ତି । ଏହା ବ୍ୟତୀତ ଏକ ରୁହ ପାଞ୍ଚ ଫୁଟ ଲମ୍ବ ବାଉଁଶରେ ଗୋଟିଏ ପାଖରୁ ଛୋଟ ଛୋଟ କରି ଚିରି ଦିଆଯାଏ । ଅନ୍ୟ ପାଖଟି ବାଉଁଶର ଗୋଟିଏ ଗଣ୍ଠି ନିକଟରେ ଲାଗିଥାଏ । ଚିରା ଯାଇଥିବା ଅଂଶରୁ ସରୁ ବାଉଁଶ ପାତି ଦ୍ୱାରା ବୁଣାଯାଏ । ଗଣ୍ଠିକୁ ଲାଗିଥିବା ଅଂଶରୁ ବୁଣା ଆରମ୍ଭ କରାଯିବାରୁ ତାହା କ୍ରମଶଃ ମୋଟା ହୋଇ ମୁହଁ ପାଖକୁ ଏକ ନଳ ଭଳି ଦେଖାଯାଏ । କିନ୍ତୁ ଅପର ପାଖଟି ସଂକୁଚିତ ହୋଇ ବନ୍ଦଥାଏ ।

କନ୍ଧମାନେ ଉକ୍ତ ଗୁଏଲ (ବେନ୍ଦା ବା କୁମୁଣା ବା ମୁଗୁରା) ସାହାଯ୍ୟରେ ସାଧାରଣତଃ କାର୍ତ୍ତିକ, ମାର୍ଗଶୀର ମାସରେ ପାଣି ବହି ଯାଉଥିବା ବା ବିଲ ମୁହାଁଣ କିମ୍ବା ଛୋଟ ଛୋଟ ନାଳ ଓ ଝରଣାରେ ବସାଇଥାନ୍ତି । ଏହାର ଖୋଲା ଅଂଶଟି ପାଣିରେ ମାଟିସହ ସମାନଭାବେ ପୋତି ହୋଇଥାଏ ଓ ବନ୍ଦ ଅଂଶଟିକୁ କାଠି ଦ୍ୱାରା ସାମାନ୍ୟ ନୁଆଁଇ ଆଗକୁ ଝୁଲାଇ ରଖାଯାଇଥାଏ । ଫଳରେ ପାଣି ସ୍ରୋତରେ ମାଛମାନେ କୁମୁଣା ଭିତରକୁ ଚାଲିଯାଆନ୍ତି ଓ କୁମୁଣା ମଧ୍ୟ ଭାଗରୁ ପାଣିସ୍ରୋତଟି ଜାଲିଦେଇ-ତଳକୁ ଖସି ଯାଉଥିବାରୁ ଓ ସାମ୍ନା ପଟଟି ବନ୍ଦ ଥିବାରୁ ମାଛଗୁଡ଼ିକ ବାହାରକୁ ବାହାରି ନପାରି ସେଠାରେ ରହିଯାନ୍ତି । ଏପରି ଭାବରେ ଧୀରେ ଧୀରେ କୁମୁଣା ମଧ୍ୟରେ ମାଛମାନେ ଜମା ହୋଇ ରହନ୍ତି ଓ କେତେକ ସମୟ ପରେ ବସାଇଥିବା ଲୋକ ଯାଇ ସେଠାରୁ ମାଛ ସଂଗ୍ରହ କରିଥାଏ । ଏହି ପ୍ରଣାଳୀରେ କେରାଣ୍ଡି, ଦଣ୍ଡିକରି, ବାଲିଗରଡ଼ା, ଚିଙ୍ଗ ଇତ୍ୟାଦି ମାଛ ଧରାଯାଇଥାଏ ।

ପାଣି ଅଟକାଇ— ଏଇ ପ୍ରଣାଳୀକୁ କୁଇ ଭାଷାରେ ନେଞ୍ଜା ବା ଲେଞ୍ଜା କୁହାଯାଏ । ଖରାଦିନେ ନଦୀ ଓ ନାଳ ତଥା ପୋଖରୀ ପାଣି ଶୁଖି ଆସିଲେ ଏହି ପ୍ରଣାଳୀରେ କନ୍ଧମାନେ ମାଛ ମାରିଥାନ୍ତି । ଏହି ପ୍ରଣାଳୀରେ ହିଡ଼ ଦ୍ୱାରା ପାଣିକୁ ଭାଗ ଭାଗ କରି ହିଡ଼ ବାହାରକୁ ପାଣି ବହିଥାନ୍ତି ଓ ପାଣି

Digitized by PPRACHIN, SOA

କମିଗଲେ ଚଳକା ପାଣିକୁ ଘାଣ୍ଟି ଚଳଚଟି ଟୋଳଆ କରି ମାନ୍ନ ଧଟପଏ !
ଏହି ଉପାୟରେ କେବଣ୍ଡି, ଦଣ୍ଡକଇ, କଚଙ୍ଗ, ମାଗୁର, ଟେଙ୍ଗା, ଶିଙ୍ଗି,
ବାଳଆ ପ୍ରଭୃତି ମାଛ ଧରାଯାଏ । ପାଣି ଗୋଳଆ କରିବା ପୂର୍ବରୁ ଦେଖା
ଦେଇ କେରଣ୍ଡି, ଦଣ୍ଡକଇ, ଶଙ୍କୁଡ଼, ବାଲିଗରଡ଼ା ଆଦି ଧରିଥାନ୍ତି ।

ଉଞ୍ଜ ପକାଇ — ଉଞ୍ଜ ସରୁ ବାଉଁଶ କାଠିରେ ବୁଣାଯାଇଥିବା ଅର୍ଦ୍ଧଗୋଲାକ
ଭଳି ଏକ ମାଛମରା ଉପକରଣ । ଏହାକୁ ଉପକୂଳବର୍ତ୍ତୀ ଅଞ୍ଚଳରେ
ପ୍ରୋଳୁହ କହିଥାନ୍ତି । ଏହା ଗ୍ରେଷ୍ଠ ଓ ବଡ଼ ଆକାରରେ ତିଆରି ହୋଇଥିଲେ
ମଧ୍ୟ ସାଧାରଣତଃ ଏହାର ଆନୁମାନିକ ଗୋଲେଇ ଡିନିଫୁଟ ଓ ଉଚ୍ଚତା
ଅଢ଼େଇ ଫୁଟ ମଧ୍ୟରେ ସୀମିତ ରହେ । ଏହାର ତଳଭାଗ ଖୋଲାଥାଏ ।
ଉପର ଭାଗରେ ଆନୁମାନିକ ଛଅ ବା ସାତ ଇଞ୍ଚର ଗୋଲାକାର ଖୋଲା
ଅଂଶ ଥାଏ । ଉକ୍ତ ଗୋଲେଇ ସହ ବାଉଁଶ କାଠିଗୁଡିକ ଶକ୍ତଭାବରେ
ବନ୍ଧାଯାଇଥାଏ । ନଦୀ ବା ପୋଖରୀର କମ୍ ପାଣି ଥିବା ଅଂଶରେ ଉଞ୍ଜ
ପକାଇ ଚାପି ଦିଆଯାଏ । ଫଳରେ ଉଞ୍ଜର ତଳ ପାଖଟି ପଙ୍କ ମଧ୍ୟରେ
ପଶିଯାଏ ଏବଂ ତାହା ମଧ୍ୟରେ ଥିବା ମାଛମାନେ ବାହାରକୁ ଯାଇ ପାରନ୍ତି
ନାହିଁ । ମାଛ ମାରୁଥିବା ବ୍ୟକ୍ତି ଉଞ୍ଜର ଉପର ପଟ ଖୋଲା ଅଂଶ ଦେଇ
ହାତ ଗଳାଇ ଉଞ୍ଜ ମଧ୍ୟରେ ଥିବା ମାଛ ଧରନ୍ତି । ସାଧାରଣତଃ ଶୀତ
ଦିନରେ ଉଞ୍ଜ ଦ୍ୱାରା ମାଛ ଧରିବା ଅଧିକ ପରିମାଣରେ ଦେଖାଯାଏ ।

ବନଶୀ ବା କାଣ୍ଟା ପକାଇ — ବନଶୀକୁ କୁଇ ଭାଷାରେ କାଣ୍ଟା କୁହାଯାଏ ।
ବନଶୀ କଣ୍ଟାରେ କେଞ୍ଚୁଆ ଗଳାଇ ପାଣିରେ ପକାନ୍ତି । । ମାଛ କେଞ୍ଚୁଆକୁ
ଖାଇଲେ ତା'ର ତଣ୍ଟିରେ କଣ୍ଟା ଗଳଯାଏ ଓ ମାଛ କଷ୍ଟରେ ପଳାଇ
ଯିବାକୁ ଚେଷ୍ଟା କରେ । ଫଳରେ ବନଶୀ ସୂତାରେ ଲାଗି ଭାସୁଥିବା
ଶୋଲଟି ପାଣିରେ ବୁଡ଼ିଯାଏ ଏବଂ କଣ୍ଟାରେ ମାଛ ଲାଗିଛି ବୋଲି ଜଣାଯାଏ ।
ଏଣୁ ବନଶୀ ଧରିଥିବା ବ୍ୟକ୍ତି ବନଶୀ ସୂତାକୁ ଉପରକୁ ଉଠାଇ ଆଣି
ମାଛଟିକୁ ଧରେ ।

ପୁଞ୍ଜି ପକାଇ — ଏହି ପ୍ରଣାଳୀକୁ ପୁଞ୍ଜି ବା ବୁଜା କୁହାଯାଏ । ପ୍ରାୟ ଏକ
ଫୁଟ ଲମ୍ବର ସୂତାକୁ ସପେର ନାମକ ଏକ ଠାଣ୍ଟା ଘାସ ଖଣ୍ଡିଏର ଏକ

Digitized by PPRACHIN, SOA

ଫାଶରେ ଚରି ଚଳାଇ ଦେଖନ୍ତି । କେଂଚୁଆ ଆଣି ଉକ୍ତ ସପେର ବାଁଧି ଏପରି ଚଳାଇ ସୂତାକୁ ଚୁବି କେଂଚୁଆ ଦ୍ୱାରା ପୂର୍ଣ୍ଣ କରି-ଦଉଡ଼ି ଭଳି ବଳି ଦିଅନ୍ତି । ଫଳରେ କେଂଚୁଆ ସୂତା ମୋଟା ମୋଟା ହୋଇଯାଏ । ଉକ୍ତ ସୂତାକୁ ଅନ୍ୟ ଏକ ଲମ୍ବା ସୂତାରେ ବାନ୍ଧି ବିଲ ମଝିରେ ଥିବା ପାଣିରେ ପକାଇ ଲମ୍ବା ସୂତାରି ଅନ୍ୟ ମୂଣ୍ଡକୁ ଧରି ବସନ୍ତି । ମାଛ ସୂତାରେ ଲାଗିଥିବା କେଂଚୁଆକୁ କାମୁଡ଼ିଲେ ସୂତାକୁ ଟାଣି ଅଣି ମାଛକୁ ଧରନ୍ତି । ଏହାକୁ ବୂଜା ପକାଇବା କୁହାଯାଏ ।

ମାଛ ଯନ୍ତା – ସରୁ ବାଉଁଶ କାଠି ସୂତା ବା ଟିଅଳ ଲଇ ଦ୍ୱାର ବୁଣି ଆନୁମାନିକ ଦେଢ଼ ଫୁଟ ଲମ୍ବ ଓ ଫୁଟେ ଚଉଡ଼ାର ପେଡ଼ିଭଳି କରିଥାନ୍ତି । ଏହି ପେଡ଼ିର ଗୋଟିଏ ପାଖରୁ କାଠିଗୁଡ଼ିଏ ଭିତର ପାଟକୁ ଟେରେଇଛେଇ ବୁଣାଯାଇଥାଏ । ସେହି କାଠିଗୁଡ଼ିକ ଏପରି ବୁଣାଯାଇଥାଏ ଯେ, ସେଗୁଡ଼ିକ ପେଡ଼ିଭଳି ଦିଶୁଥିବା ଯନ୍ତାର ଭିତର ପଟ ମଝିକୁ ଯାଇ ଏକତ୍ରିତ ହେବା ସ୍ଥାନରେ ଏକ ସରୁ ରାସ୍ତା ତିଆରି କରିଥାନ୍ତି ।

ଭଜା ମହୁଲ ହେଙ୍ଗୁ, କଣି ଚିଉଆ ମିଶାଇ କୁଟି ଛୋଟ ଛୋଟ ଗୋଲାକର ଯନ୍ତା ମଧ୍ୟରେ ରଖି ଯନ୍ତାକୁ ଗାଧୁଆ ପାଣିରେ ପକାଇଥାନ୍ତି । ଏକକାଳୀନ ଗୁଡ଼ାଏ ଯନ୍ତା ପକାଯାଇଥାଏ । ଯନ୍ତା ଭିତରେ ଥିବା ଖାଦ୍ୟ ଲୋଭରେ ମାଛ ସଙ୍କୀର୍ଣ୍ଣ ବାଟରେ ଯନ୍ତା ଭିତରେ ପ୍ରବେଶ କରନ୍ତି । କିନ୍ତୁ ଫେରି ପାରନ୍ତି ନାହିଁ । ଗଭୀର ପାଣିରୁ ମାଛ ଧରିବା ନିମନ୍ତେ କନ୍ଧମାନେ ଏହି ପ୍ରଣାଳୀ ଅବଲମ୍ବନ କରିଥାନ୍ତି । ଯନ୍ତା ପକାଇ ଅପେକ୍ଷା କରିବା ଦରକାର ପଡ଼େ ନାହିଁ । ଦୀର୍ଘ ସମୟ ପରେ ଯାଇ ଯନ୍ତାଗୁଡ଼ିକୁ ଟେକି ସେଥିରେ ଥିବା ମାଛ ଧରିଥାନ୍ତି ।

୭. ମଝେଇବା ବା ବିଷ ପ୍ରୟୋଗ କରିବା :— ଏହି ପ୍ରଣାଳୀକୁ କୁଇ ଭାଷାରେ ମାଜା ବେଃପା କହିଥାନ୍ତି । ପାଣିରେ ବିଭିନ୍ନ ପ୍ରକାରର ଚେର-ମୂଳି, ଫଳ, ପତ୍ର ବା ଗଛର ରସ ପକାଇ ପାଣିକୁ ବିଷାକ୍ତ କରାଯାଏ । ଜଳର ପରିମାଣ ଅନୁସାରେ ବିଷାକ୍ତ ଦ୍ରବ୍ୟ ପ୍ରୟୋଗ କରାଯାଇଥାଏ । ବଡ଼ ବଡ଼ ନଦୀ କୂଅ, ନଦୀ ନାଳର ଗଭୀର ପାଣିରେ ବିଷାକ୍ତ ଦ୍ରବ୍ୟ ପ୍ରୟୋଗ

Digitized by PPRACHIN, SOA

କରାଯାଇଥାଏ । ବିଷାକ୍ତଦ୍ରବ୍ୟ ପ୍ରୟୋଗ କଲାପରେ ଡ଼ାଳ ପକାଇ ପାଣିକୁ ଘାଣ୍ଟି ଦିଅନ୍ତି । ବିଷାକ୍ତଦ୍ରବ୍ୟ ପାଣିରେ ମିଶିଗଲା ପରେ ମାଛଗୁଡ଼ିକ ନିସ୍ତେଜ ହୋଇ ଉପରକୁ ଉଠି ଆସନ୍ତି ଓ କନ୍ଧମାନେ ମାଛଗୁଡ଼ିକୁ ଧରି-ଥାନ୍ତି ।

ନାଳର ବନ୍ଧି ଯାଉଥିବା ପାଣିରେ ବିଷାକ୍ତଦ୍ରବ୍ୟ ପ୍ରୟୋଗ କରିବା ଦରକାର ହେଲେ ସ୍ରୋତର ଉଭୟ ପାଖରୁ ବାଡ଼ ଦ୍ୱାରା ପାଣିକୁ ଅଟକାଇ ଦିଆଯାଏ । ସାଧାରଣତଃ ଖରାଦିନେ ଏହି ଉପାୟରେ କନ୍ଧମାନେ ମାଛ ଧରିଥାନ୍ତି । ମୁଣ୍ଡାମାନେ ବି ଏହି ପ୍ରଣାଳୀ ଅବଲମ୍ବନ କରି ମାଛ ଧରିଥାନ୍ତି ।

ମୁଖ୍ୟତଃ ନିମ୍ନ ବର୍ଣ୍ଣିତ ପ୍ରଣାଳୀରେ ପାଣିକୁ ବିଷାକ୍ତ କରି କନ୍ଧମାନେ ମାଛ ଧରିଥାନ୍ତି ।

ଯଥା— (କ) କଞ୍ଚା କଞ୍ଚା ବାଞ୍ଚଲ ଗୁଳି ନେଇ ପାଣି ପାଖରେ ପଥରରେ ଛେଚି ପାଣିରେ ଫିଙ୍ଗି ଦିଆଯାଏ । ଗୁଳିର ରସ ପାଣିରେ ମିଶିଲେ ପାଣି ଧଳା ଦେଖାଯାଏ । ସମସ୍ତ ପାଣି ଧଳା ଦେଖାଗଲେ ପାଣିକୁ ଘାଣ୍ଟି ଦେଇ ମାଛ ଧରିଥାନ୍ତି ।

(ଖ) ମାଙ୍କଡ଼ ଶିଆଳୀ ବା କୁଇ ଭାଷାରେ କସିମାଳ ଗଛର ଚେର ଛେଚି ପାଣିରେ ପକାଇ ପାଣି ବିଷାକ୍ତ କରିଥାନ୍ତି ।

(ଗ) ମାଜାକାଙ୍ଗା ବା ମହ୍ନା ଫଳ (ଶୁଖିଲା ପାଚିଲା) ବାଲିସହ କୁଟି ପାଣିରେ ଛୁଆଁଇଲା ପରି ଫିଙ୍ଗନ୍ତି ।

(ଘ) କେରେଣ୍ଡ଼ କାଙ୍ଗାର ପାଚିଲା ଫଳ ବି ବାଲିସହ କୁଟି ପାଣିରେ ପକାଇଥାନ୍ତି ।

(ଙ) ପିତା ଭଦାଲି ଲତାର ପତ୍ର ବାଲିସହ କୁଟି ପାଣିରେ ପକାଇ ପାଣିକୁ ବିଷାକ୍ତ କରିଥାନ୍ତି ।

Digitized by PPRACHIN, SOA

ଏହିପରି ବିଭିନ୍ନ ପ୍ରଣାଳୀ-ଅବଲମ୍ବନ କରି କନ୍ଧମାନେ ମାଛ ଧରିବା ଜଣାଯାଏ । କିନ୍ତୁ ଜାଲ ପକାଇ ମାଛ ଧରିବା କନ୍ଧମାନଙ୍କ ମଧ୍ୟରେ ଦେଖାଯାଏ ନାହିଁ । ବିଷାକ୍ତଦ୍ରବ୍ୟ ପ୍ରୟୋଗ କରି ଏବଂ ପାଣି ଅଟକାଇ ମାଛ ଧରିବା ସେମାନଙ୍କ ମଧ୍ୟରେ ଅଧିକ ପ୍ରଚଳିତ ଏବଂ ଉକ୍ତ ପ୍ରଣାଳୀ ସେମାନଙ୍କ ସ୍ୱ ସଂସ୍କୃତି ପୁଷ୍ଟିପର ମନେହୁଏ । କିନ୍ତୁ ଅନ୍ୟାନ୍ୟ ପ୍ରଣାଳୀ-ଗୁଡିକ ସେମାନେ ଆର୍ଯ୍ୟ ସମାଜରୁ ଗ୍ରହଣ କରିଥିବା ଅନୁମିତ ହୁଏ ।

## ସହାୟକ ପୁସ୍ତକ ସୂଚୀ

୧. Watts, Nevile A. — The Halfclad Tribes of Easferm India–1970-Calcutta- P. 122.

୨. Ibid.



# ମାଟିଗୁରୁ ନିଯୁକ୍ତି ପ୍ରକ୍ରିୟା

କନ୍ଧ ଧର୍ମଧାରାରେ ମାଟିଗୁରୁ ଏକ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଅଧିକାର କରିଥାନ୍ତି । କେଉଁ ବା ଯାଗିତ ସମୟରେ "ଦାରନି ପେନୁ" ବା ମାଟି ଦେବତାଙ୍କ ପୂଜା ନିମନ୍ତେ ମାଟିଗୁରୁଙ୍କ ଏକାନ୍ତ ଆବଶ୍ୟକତା ଥାଏ । ମାଟିଗୁରୁ ନିଯୁକ୍ତି ନିମନ୍ତେ କନ୍ଧ ସମାଜରେ ଏକ ସ୍ୱତନ୍ତ୍ର ନିୟମ ପ୍ରଚଳିତ ଅଛି ।

ଏହି ନିୟମକ୍ରମରେ ମାଟିଗୁରୁ ନିଯୁକ୍ତି ବଂଶାନୁକ୍ରମିକଭାବେ ହୋଇଥାଏ । ଯେଉଁ ବଂଶରେ ପୂର୍ବରୁ ମାଟିଗୁରୁ ଥାନ୍ତି ସେହି ବଂଶର କୌଣସି ବ୍ୟକ୍ତିହିଁ ମାଟିଗୁରୁ ହୋଇ ପାରନ୍ତି । ଅନ୍ୟ ବଂଶର କୌଣସି ବ୍ୟକ୍ତି ମାଟିଗୁରୁ ହୋଇ ପାରନ୍ତି ନାହିଁ । ବଂଶରେ ଜଣେ ମାଟିଗୁରୁ ଥିଲେ ତାହାଙ୍କ ମୃତ୍ୟୁପରେହିଁ ଅନ୍ୟ ଜଣେ ମାଟିଗୁରୁଭାବରେ ଅଭିଷିକ୍ତ ହୋଇ ପାରନ୍ତି ।

ଜଣେ ଗୁରୁଙ୍କ ମୃତ୍ୟୁପରେ ଦାରନି ପେନୁ ସେହି ବଂଶର ଯାହା ଉପରେ ସନ୍ତୁଷ୍ଟ ତାହାକୁ ନାନା ପ୍ରକାର ରୋଗରେ ଅସୁସ୍ଥ କରାଇଥାନ୍ତି ବୋଲି ବିଶ୍ୱାସ କରାଯାଇଥାଏ । ଉକ୍ତ ବ୍ୟକ୍ତି ସାଧାରଣତଃ ଘା, କାଚୁକୁଣ୍ଡିଆ, ଜ୍ୱର, ମୁଣ୍ଡବ୍ୟଥା ଇତ୍ୟାଦି ନାନା ପ୍ରକାର ରୋଗରେ ପୀଡ଼ିତ ହୋଇ ସବୁବେଳେ ଘୁମେଇଲା ପରି ରହନ୍ତି । ସମୟେ ସମୟେ ହାତ ମୁଠା ମୂଠା କରିଥାନ୍ତି ଓ ଦେବତା ପ୍ରବେଶର ଲକ୍ଷଣମାନ ତାହାଙ୍କଠାରେ ପ୍ରକାଶ ପାଇଥାଏ । ଉପରୋକ୍ତ ଲକ୍ଷଣମାନ ଦେଖିଲା ପରେ ତାହାଙ୍କ ବଂଶୀୟ ଲୋକେ ଉକ୍ତ ବ୍ୟକ୍ତିକୁ ମାଟି ମାଆ ସହାୟ ହେଉଥିବା ଅନୁମାନ କରି ଅନ୍ୟ ଜଣେ ଗୁରୁଙ୍କ ସାହାଯ୍ୟରେ "କୁଉଠା" ଦେଖାଇବା ଦ୍ୱାରା ଯଦି ତାହାଙ୍କୁ ମାଟି ମାଆ ସହାୟ ହେଉଥିବା ଜଣାଯାଏ ତେବେ ଉକ୍ତ ବ୍ୟକ୍ତିକୁ ମାଟିଗୁରୁଭାବରେ ଅଭିଷିକ୍ତ କରିବାର ନିଷ୍ପତ୍ତି ନିଆଯାଇଥାଏ ।

ଅବିବାହିତ ପୁରୁଷ ମାଟିଗୁରୁ ହେବା ନିମନ୍ତେ ଅନୁପଯୁକ୍ତ ବିବେଚିତ ହୋଇଥାନ୍ତି । କିନ୍ତୁ ଗୁରୁଭାବରେ ଅଭିଷିକ୍ତ ହେଲାପରେ ଯଦି ପତ୍ନୀ ବିୟୋଗ ଘଟେ ବା ସ୍ତ୍ରୀ ଛାଡ଼ପତ୍ର ନେଇଯାଏ, ସେପରି କ୍ଷେତ୍ରରେ ମାଟିପୂଜା କରିବାରେ କୌଣସି ବିଧି ନିଷେଧ ନାହିଁ । କିନ୍ତୁ ଝାଙ୍କରଙ୍କ

Digitized by PPRACHIN, SOA

(ଜାତକର ଶେଭୁଙ୍କ ମୂଳକ) କ୍ଷେତ୍ରରେ ଅଭିଷିକ୍ତ ହେଲାପରେ ସ୍ତ୍ରୀ ମୃତ ହେଲେ ବା ଗୁଡ଼ପଣ ଦ୍ୱାରା ବହିଷ୍କୃତ ହେଲେ ପୁନର୍ବାର ବିବାହିତ ହୋଇ ଗୁରୁଙ୍କ ଦ୍ୱାରା ଘରର ଉତ୍ତୁନା (ଓଳି)ଠାରେ ନବ-ଦମ୍ପତିଙ୍କ ମୁଣ୍ଡରେ ହଳଦୀପାଣି ନ ଛିଞ୍ଚାଗଲାଯାଏ ସେମାନେ ଘରକୁ ପ୍ରବେଶ କରି ପାରିବେ ନାହିଁ କି ଝାଙ୍କର ପୂଜା କରି ପାରିବେ ନାହିଁ । ପୁନର୍ବାର ବିବାହ ପରେ ହିଁ ସେ ଝାଙ୍କରଭାବେ ଉପଯୁକ୍ତ ବିବେଚିତ ହେବେ ।

କୁଉଡ଼ା ଦେଖାରେ ମାଟିହାଣ୍ଡି ସମ୍ବନ୍ଧୀୟ ହେଉଥିବା ବିଷୟ ଅବଗତ ହେଲାପରେ ମାଟିଗୁରୁ ଅଭିଷେକ ବିଷୟରେ ନିଷ୍ପତ୍ତି ନିଆଯାଇ ସେଥିନିମନ୍ତେ ଦିନଟିଏ ନିର୍ଦ୍ଦିଷ୍ଟ କରାଯାଏ । ଯେଉଁ ବ୍ୟକ୍ତି ଅଭିଷିକ୍ତ ହେବେ ତାହାଙ୍କ ସୁବିଧାକୁ ଆଖି ଆଗରେ ରଖି ଅଭିଷେକ ଦିନ ସ୍ଥିର ହୋଇଥାଏ । ଅଭିଷେକ ନିମନ୍ତେ ଆବଶ୍ୟକୀୟ ଉପକରଣ ସଂଗ୍ରହ କରିଲାପରେ ନିର୍ଦ୍ଦିଷ୍ଟ ଦିନଟି ଗ୍ରାମବାସୀଙ୍କୁ ଜଣାଇ ଦିଆଯାଏ ।

ଅଭିଷେକ ଦିନର ପୂର୍ବଦିନ ରାତ୍ରିରେ ଅଭିଷିକ୍ତ ହେବାକୁ ଥିବା ବ୍ୟକ୍ତିଙ୍କ ଘରଦ୍ୱାର ଲିପାପୋଛା କରାଯାଏ ଏବଂ ଲୁଗାପଟା ଧୁଆ କରାଯାଏ । ଅଭିଷେକ ଦିନ ସକାଳୁ ପୂର୍ବରୁ ବ୍ୟବହୃତ ରନ୍ଧନପାତ୍ରଗୁଡ଼ିକ ବାହାର କରାଯାଏ ।

ନିର୍ଦ୍ଦିଷ୍ଟ ଦିନ ଗୁରୁଭିକରେ ଅଭିଷିକ୍ତ ହେଉଥିବା ବ୍ୟକ୍ତି ସହିତ, ପାଣି ଢାଳିବା ପାଇଁ ଜଣେ ବ୍ୟକ୍ତି ଏବଂ ପୂଜା କରିବା ପାଇଁ ସ୍ଥିରୀକୃତ ପୂଜକ ବା ବୟସ୍କ ବ୍ୟକ୍ତି ତିନି ଜଣ ଉପବାସ ରହନ୍ତି । ସକାଳୁ ଉକ୍ତ ତିନି ଜଣ ଗୋଟିଏ ନୂଆ ମାଟିହାଣ୍ଡି, ତିନୋଟି ନୂଆ ଲୁଗା, କଞ୍ଚାହଳଦୀ, ଗୋଟିଏ କାଞ୍ଜିଆ ଅଣ୍ଡା ଓ କିଛି ଉଷୁନା ଚାଉଳ ଧରି କୌଣସି ସର୍ବସାଧାରଣ ବ୍ୟବହାର କରୁଥିବା ଚୁଆଁ ଗଡ଼ିଆକୁ ଯାଇଥାନ୍ତି । ଦେଖିବା ପାଇଁ ଗାଁର ଅନ୍ୟମାନେ ମଧ୍ୟ ଯାଇଥାନ୍ତି । ଚୁଆଁ ବା ଗଡ଼ିଆଠାରେ ପହଞ୍ଚି ଉକ୍ତ ତିନି ଜଣ ପ୍ରଥମେ ପାଣିରେ ବୁଡ଼ ଗାଧୁଅନ୍ତି ଏବଂ ନୂଆ ଲୁଗାଗୁଡ଼ିକ ଓଦାକରି ହଳଦୀ ଘୋରି ନୂଆ ଲୁଗାଗୁଡ଼ିକରେ ଲଗାଇଥାନ୍ତି । ତିନି ଜଣ ଏହି ହଳଦୀଲଗା ଲୁଗାରୁ ଖଣ୍ଡେ ଖଣ୍ଡେ ପିନ୍ଧନ୍ତି । ଏହାପରେ ପୂଜା ପାଇଁ ଉଦ୍ଦିଷ୍ଟ ଗୁରୁ ବା ପୂଜକ ଜଣକ ଚୁଆଁର ଉପର ପାଖକୁ ଯାଇ

Digitized by PPRACHIN, SOA

ଚାଉଳ ପୁଞ୍ଜି ଉପରେ କାଞ୍ଜିଆ ଅଣ୍ଡା ରଖି ପୂଜା କରନ୍ତି ଏବଂ ତା ତଳକୁ ଉଷୁନା ଚାଉଳ ପୁଞ୍ଜିଦେଇ ବି ପୂଜା କରନ୍ତି । ପୂଜା ସରିଲାପରେ ଲଉ ଡଙ୍କାରେ ହଳଦୀମିଶା ପାଣିଦେଇ ଚାରିମୁଠା ଚାଉଳ ସେଥିରେ ପକାଇ ସମସ୍ତ ଦେବାଦେବୀଙ୍କୁ ଡାକି ଡାକି "ତୁମେମାନେ ଏହାକୁ ସହାୟ ହୁଅ" ବୋଲି କହି ଗୁରୁଭାବରେ ଅଭିଷିକ୍ତ ହେଉଥିବା ବ୍ୟକ୍ତିଙ୍କ ମୁଣ୍ଡରେ ଉକ୍ତ ପାଣି ଢାଳିଥାନ୍ତି ।

ଏହି ସମୟରେ ନୂତନ ଗୁରୁଙ୍କଠାରେ ମାଟିମାଆ ଉଭା ହୁଅନ୍ତି ଏବଂ ସେ ନୂଆ ହାଣ୍ଡିରେ ପାଣି ଭରି କାନ୍ଧିରେ ବୋହି ଝୁଲିଝୁଲି ଅନ୍ୟମାନଙ୍କସହ ଗାଁକୁ ଫେରନ୍ତି । ଯେଉଁଠାରେ ସେ ତାହାଙ୍କ ପୂଜା ନିମନ୍ତେ ଦାରନି ପେନୁ (ଧରଣୀ ଦେବତା) ରଖିବା ପାଇଁ ଉଚିତ ମନେ କରନ୍ତି ସେଠାକୁ ଯାଆନ୍ତି । ଯଦି ସେଠାରେ ପୂର୍ବରୁ ଦାରନି ପେନୁ ପ୍ରତିଷ୍ଠିତ ହୋଇଥାନ୍ତି ଆଉ ନୂତନ ଦାରନି ସ୍ଥାପନ କରିବା ଆବଶ୍ୟକତା ନଥାଏ । ମାତ୍ର ନୂତନ ଦାରନି ପ୍ରତିଷ୍ଠା କରିବା ପୂର୍ବରୁ ଦାରନି ଥିଲେ ସେଠାରେ ଦୁଇଟି କାଞ୍ଜିଆ ଅଣ୍ଡା ଓ ଉଷୁନା ଚାଉଳ ପୁଞ୍ଜି ବାଢ଼ି ନୂତନ ଗୁରୁ ପୂଜା କରନ୍ତି ଓ ପ୍ରଥମେ କୁକୁଡ଼ା ପରେ ଛେଳି ବଳିଦେଇ ତାହାର ରକ୍ତ ମାଟିରେ ପକାଇଥାନ୍ତି । ପରେ ମଦ ଥିପାଇଥାନ୍ତି ।

ପୂଜା ଶେଷ ହେଲାପରେ ବଳିଗୁଡ଼ିକୁ ନେଇ ଗ୍ରାମ ବାହାରେ ରାନ୍ଧି ସମସ୍ତ ଗ୍ରାମବାସୀ ଖାଇଥାନ୍ତି । ଏହି ଭୋଜିରେ କୌଣସି ସ୍ତ୍ରୀ ଏପରିକି ବାଳିକା ମଧ୍ୟ ଯୋଗଦେବା ପୂରାପୂରି ନିଷେଧ । ଏହି ଦିନଠାରୁ ନୂତନଭାବେ ଅଭିଷିକ୍ତ ହୋଇଥିବା ବ୍ୟକ୍ତି ମାଟିଗୁରୁ ଭାବରେ ପରିଚିତ ହୋଇଥାନ୍ତି ଏବଂ ନିଜ ଗ୍ରାମ ତଥା ଅନ୍ୟାନ୍ୟ ଗ୍ରାମମାନଙ୍କରେ ନିକେଡ଼ୁ ବା ଝାଗିଡ଼ି ସମୟରେ ମାଟିପୂଜା କରିପାରନ୍ତି ।

ମାଟିଗୁରୁ ଏକ ଲୁହାବାଡ଼ି ଧରିଥାନ୍ତି । ଉକ୍ତ ବାଡ଼ିକୁ "ଗୁରୁସାବାଳି ହୁଡା" କୁହାଯାଏ । ଅଭିଷିକ୍ତ ହୋଇଥିବା ଗୁରୁଙ୍କ ଘରେ ଯଦି ଉକ୍ତ ବାଡ଼ି ପୂର୍ବରୁ ଥାଏ ତେବେ ସେ ତାହା ବ୍ୟବହାର କରିଥାନ୍ତି । ଯଦି ନ ଥାଏ ତେବେ ନୂତନଭାବରେ ଏକ ବାଡ଼ି ତିଆରି କରିବାକୁ ପଡ଼ିଥାଏ । ଗୁରୁ ସାବାଳି ହୁଡ଼ାର ଲମ୍ବ ପ୍ରାୟ ଚାରିଫୁଟ ଏବଂ ଗୋଲେଇ ପ୍ରାୟ ଦୁଇ ଇଞ୍ଚ ହୋଇଥାଏ । ଉକ୍ତ ବାଡ଼ିର ଅର୍ଦ୍ଧ ଅଂଶ ଚାରି କୋଣିଆ

Digitized by PPRACHIN, SOA

ଓ ଅଗ୍ରଭାଗ ମୁନିଆ ହୋଇଥାଏ ଏବଂ ଉପର ଅର୍ଦ୍ଧ ଅଂଶ ଗୋଲାକାର ଥାଏ । ଉକ୍ତ ବାଡ଼ିର ଅଗ୍ରଭାଗରେ ଏକ ଛିଦ୍ରଥାଏ ଓ ଉକ୍ତ ଛିଦ୍ରରେ ବଙ୍କା ପତଳା ଲୁହା ଦୁଇଖଣ୍ଡ ଲେଖାଏ ଗୁଡ଼ିଖଣ୍ଡ ଲାଗିଥାଏ ।

ନୂତନ ବାଡ ତିଆରି କରିବାକୁ ହେଲେ ତିଆରି କରିବା ଦିନ ଅଭିଷିକ୍ତ ହୋଇଥିବା ଗୁରୁ ଓ ବାଡ ତିଆରି କରିବା ଲୋହାର (କମାର) ଗାଧୋଇ ଶୁଦ୍ଧପୂତଭାବରେ ବାଡ ତିଆରି କରିଥାନ୍ତି ଓ ବାଡ ତିଆରି ଶେଷ ହେବାଯାଏ ଉପବାସ ରହିଥାନ୍ତି । ବାଡ଼ ତିଆରି ଶେଷ ହେଲାପରେ ଦାରନ (ଧରଣୀ ପେନୁଙ୍କ ପୂଜାସ୍ଥଳୀ)କୁ ନେଇ ପୂଜା କରିଥାନ୍ତି ।

ଗୁରୁ ହେଲାପରେ ପ୍ରତିବର୍ଷ ମହୁଲ ନୂଆ ଓ ଧାନ ନୂଆ ନବାର୍ଣ୍ଣ ଦେବା ଦିନ କୁକୁଡ଼ାବଳି ଦେଇ ମଦ ଥାପାଇ ଗୁଡ଼ଜଳପୁଞ୍ଜି ଦେଇ ଦାରନ ପେନୁଙ୍କୁ ପୂଜା ଦେଇଥାନ୍ତି ।

ମାଟିଗୁରୁ ହେଲାପରେ ତାହାଙ୍କୁ କେତେକ ବିଧି ନିଷେଧ ମାନି ଚଳିବାକୁ ହୋଇଥାଏ ଯଥା—ଗୁରୁ ହେବା ପରେ ଦାଢ଼ି ଓ ବାଳ କାଟି ନ ଥାନ୍ତି । ଯଦି ଦାଢ଼ି ଓ ବାଳ କାଟିବାକୁ ଚାହାନ୍ତି ତେବେ ଅଭି- ଷିକ୍ତ ହେବାର ଏକବର୍ଷ ପରେ କାଟି ପାରନ୍ତି । ଅନ୍ୟ ଘୋଷରେ ଖାଇବା ଗୁରୁଙ୍କ ପାଇଁ ନିଷେଧ । ଯଦି ବନ୍ଧୁଘରକୁ ଯାଆନ୍ତି ତେବେ ସେ ନିଜେ ଘୋଷେଇ କରନ୍ତି କିମ୍ବା ଜଣେ ସ୍ୱଜାତୀୟ ବ୍ୟକ୍ତି ଗାଧୋଇ ଅଲଗା ଘୋଷେଇ କଲେ ଖାଇଥାନ୍ତି । କେଉଁ ବା ମାଟିପୂଜା କରିବା ପାଇଁ ଅନ୍ୟ ଗ୍ରାମକୁ ଗଲେ ଝାଙ୍କରଙ୍କ ଘର ବ୍ୟତୀତ ଅନ୍ୟନ୍ଦ ଖାଇ ନ ଥାନ୍ତି ।

(ବାର୍ତ୍ତାଭର୍ତ୍ତି ୧୯୯୨ ମାର୍ଚ୍ଚ-ଯୁଲାଇ ସଂଖ୍ୟାରେ ପ୍ରକାଶିତ)



Digitized by PPRACHIN, SOA

# ଝାଙ୍କର ନିଯୁକ୍ତି

କନ୍ଧ ଧର୍ମଧାରାରେ ମାଟିଗୁରୁଙ୍କ ପରେ ପୂଜକଭାବରେ ଝାଙ୍କରଙ୍କ ପ୍ରାଧାନ୍ୟ ରହିଛି । ଝାଙ୍କର ଗ୍ରାମର ପୂଜକଭାବରେ ଦାରନି ପେନୁ ବା ମାଟିମାଆଙ୍କ ପୂଜା କରିଥାନ୍ତି । ଝାଙ୍କରଙ୍କ ମୃତ୍ୟୁ ପରେ ନୂତନ ଝାଙ୍କର ନିଯୁକ୍ତି ନିମନ୍ତେ କେତେକ ବିଧିବିଧାନ ପାଳନ କରାଯାଇଥାଏ । ଉକ୍ତ ପ୍ରକ୍ରିୟାକୁ ଜାକେର ଆଃପା ବା ଝାଙ୍କର ଧରିବା କୁହାଯାଇଥାଏ ।

ଜାକେର ଆଃପା ନିମନ୍ତେ ଗ୍ରାମବାସୀମାନେ ଜଣେ ଗୁରୁଙ୍କୁ ଡାକିଥାନ୍ତି । ଉକ୍ତ ଗୁରୁ ଗାଁମୁଣ୍ଡରେ କମ୍ବା ମଝି ଦାଣ୍ଡରେ ଗ୍ରାମବାସୀଙ୍କ ଉପସ୍ଥିତିରେ ଏକ ପୁରୁଣା କୁଲାରେ ଅରୁଆ ଚାଉଳ ପୁଞ୍ଜି ଦେଇ ସଳିତା ଜାଳି ପୂଜା କରନ୍ତି ଏବଂ ମଦଥିପାଇଥାନ୍ତି । ପୂଜା କରିବା ସମୟରେ ଗୁରୁଙ୍କ ଦେହରେ ଦେବତା ପ୍ରବେଶ ହୋଇଥାନ୍ତି । ଏହି ସମୟରେ ଗ୍ରାମବାସୀମାନେ ଗୁରୁଙ୍କୁ କହନ୍ତି, ଆମ ଝାଙ୍କର ମରିଯାଇଛନ୍ତି, କିଏ ନୂଆ ଝାଙ୍କର ହେବା ପାଇଁ ଉପଯୁକ୍ତ ବା ଦାରନି ପେନୁ ଯାହାର ପୂଜାରେ ସନ୍ତୁଷ୍ଟ ହେବେ ତାହା ଏଠିକୁ ଯାଅ । ଏହାପରେ ଗୁରୁ ନାଚି ନାଚି ତାହାଙ୍କ ଦୃଷ୍ଟିରେ ଝାଙ୍କର ହେବାପାଇଁ ଉପଯୁକ୍ତ ବ୍ୟକ୍ତିଙ୍କ ଘରକୁ ଯାଇଥାନ୍ତି । କମ୍ବା ସେଠାରେ ବସି ତାହାର ନାମ ପ୍ରକାଶ କରିଥାନ୍ତି । ଏହାଦ୍ୱାରା ଗ୍ରାମବାସୀମାନେ ଭାବି ଝାଙ୍କରଙ୍କ ନାମ ଜାଣି ପାରନ୍ତି ଏବଂ ଏକାଠି ବସି ଜାକେର ଗୁରୁଙ୍କୁ ବା ଝାଙ୍କର ଧରିବା ଗୁରୁଙ୍କୁ ଡାକିବା ପାଇଁ ଦିନ ସ୍ଥିର କରିଥାନ୍ତି । ଗୁରୁଙ୍କ ସହ ପରାମର୍ଶ କରି ଜାକେର ଆଃପା ନିମନ୍ତେ ଦିନ ସ୍ଥିର କରିଥାନ୍ତି ।

ନିର୍ଦ୍ଦିଷ୍ଟ ଦିନ ପୂର୍ବରୁ ଗ୍ରାମବାସୀମାନେ ଯାଇ ଜାକେର ଗୁରୁଙ୍କୁ ନିମନ୍ତ୍ରଣ କରିଥାନ୍ତି । ଗୁରୁ ନିମନ୍ତ୍ରଣ ଗ୍ରହଣ କରି ଜାକେର ଆଃପା ନିମନ୍ତେ ନିର୍ଦ୍ଦିଷ୍ଟ ଦିନର ପୂର୍ବ ରାତି ସୁଦ୍ଧା ଉକ୍ତ ଗ୍ରାମରେ ଆସି ପହଞ୍ଚିଥାନ୍ତି । ଜାକେର ଗୁରୁହିଁ ଝାଙ୍କର ଧରାଇଥାନ୍ତି । ଅନ୍ୟ ଗୁରୁ ଝାଙ୍କର ଧରାଇ ପାରି ନଥାନ୍ତି । ଏଣୁ ଜାକେର ଗୁରୁଙ୍କୁ ଜାକେର ଆଃପା ନିମନ୍ତେ ନିମନ୍ତ୍ରଣ କରିବା ଦରକାର ହୋଇଥାଏ । ଜାକେର ଆଃପା ଦିନର ଖର୍ଚ୍ଚ ଗ୍ରାମବାସୀଙ୍କ ମଧ୍ୟରେ ଚାନ୍ଦା ହୋଇ ସଂଗୃହୀତ ହୋଇଥାଏ ।

Digitized by PPRACHIN, SOA

ଯେଉଁ ନବ ଝାଙ୍କର ଧରାଯାଏ ସେହି ଦିନକୁ "ପୁନ ଜାକେର ଆଃପା" କୁହାଯାଇଥାଏ । ଉକ୍ତ ଦିନର ପୂଜା ନିମନ୍ତେ ଲୋହରା ଏକ ନୂଆ ଟାଙ୍ଗି, କାତ୍ତ ଓ ଦାଆ ଦେଇଥାଏ ଏବଂ କୁମ୍ଭାର ଦରକାର ମୁତାବକ ନୂଆ ହାଣ୍ଡି ଓ ପୁନନାହାବା ନୂଆ ମଦ କଳସିଟିଏ ଦେଇଥାଏ । କୁମ୍ଭାର ଓ ଲୋହରା ସେମାନଙ୍କ ଜିନିଷ ଧରି ପହଞ୍ଚିଲେ ନୂଆଁ ଝାଙ୍କର ଘରେ ମଦ ଥିପା ଯାଇଥାଏ ।

– ଜାକେର ଆଃପା ଦିନ ନୂତନ ଝାଙ୍କର, ଝାଙ୍କରାଣୀ, ଲୋହରା କୁମ୍ଭାର, ଗାଁର କେତେକ ମୁଖ୍ୟବ୍ୟକ୍ତି ଓ ସେମାନଙ୍କ ସ୍ତ୍ରୀ ଓ ଜାକେର ଗୁରୁ ଦାନ୍ତ ନ ଘଷି ଉପବାସ ରହନ୍ତି । ଦରକାର ସ୍ଥଳେ ମଦ୍ୟପାନ କରିଥାନ୍ତି । ପୂଜା ଶେଷ ହେଲାପରେ ଦାନ୍ତ ଘଷିଥାନ୍ତି । ସନ୍ଧ୍ୟାତାରା ଉଦୟ ହେବାପରେ ଗୁରୁ, ଝାଙ୍କର, ଝାଙ୍କରାଣୀ ଓ ଉପବାସଥିବା ପୁରୁଷ ଓ ସ୍ତ୍ରୀମାନେ ଗାଧୋଇ ଥାଆନ୍ତି । ଗାଧୋଇ ସାରିଲା ପରେ ନୂଆଁ 'ଦା'ରେ ଛଣକାଟି ଏବଂ ନୂଆଁ କୁରାଢ଼ୀରେ କାଠକାଟି ଆଣନ୍ତି । ଗାଧୋଇ ଫେରିବା ସମୟରେ ପୂଜାନିମନ୍ତେ ଶିଆଳପତ୍ର ଓ ବେଲପତ୍ର ମଧ୍ୟ ଆଣିଥାନ୍ତି ।

ସ୍ନାନସାରି ଘରକୁ ଫେରିଲା ପରେ ଡନୋଟି ନୂଆଁ ଲୁଗା ଓଢାକରି ହଳଦୀ ଲଗାନ୍ତି ଓ ଗୁରୁ ଝାଙ୍କର ଓ ଝାଙ୍କରାଣୀଙ୍କୁ ଖଣ୍ଡିଏ ଲେଖାଏଁ ପିନ୍ଧିବାକୁ ଦିଆଯାଏ । ଅନ୍ୟ ବ୍ୟକ୍ତିମାନେ ଛଣ, କାଠ ଓ ପତ୍ର ସଂଗ୍ରହ ପାଇଁ ଜଙ୍ଗଲକୁ ଯାଇଥିବା ସମୟରେ ଗୁରୁଙ୍କ ସହ ଝାଙ୍କର ନିଜ ଘରକୁ ଫେରି କୁଟୁଣି ଦ୍ୱାରା ନିଜେ ଅନ୍ୟର ସାହାଯ୍ୟ ନନେଇ ଧାନକୁଟି ଏକଦିନା ଅରୁଆ ଚାଉଳ ରଖନ୍ତି ।

ଜଙ୍ଗଲକୁ ଯାଇଥିବା ବ୍ୟକ୍ତିମାନେ ଛଣ, କାଠ, ଶିଆଳିପତ୍ର, ବେଲପତ୍ର ଧରି ଫେରିଲା ପରେ ସେଗୁଡିକ ନେଇ ନୂତନ ଝାଙ୍କରଙ୍କ ଘରର ଡାହାଣପଟ ଓଳି ତଳେ ରଖନ୍ତି । ଏହାପରେ ଅରୁଆ ଚାଉଳ, ଧୂପ, ସଳିତା, ବେଲପତ୍ର, ଶିଆଳପତ୍ର, ପୁନନାହା, ନୂଆ ବଢ଼ି, (ନୂଆଁ ଡ଼ଙ୍କା) ମଦ, ହଳଦୀଗୁଣ୍ଡ ଏକ କୁଲାରେ ନେଇ ଦାରନ ପେନୁଙ୍କ ଆସ୍ଥାନକୁ ଯାଇଥାନ୍ତି । ସେଠାକୁ ଗୁରୁ, ଝାଙ୍କର ଓ ଉପବାସୀଙ୍କ ମଧ୍ୟରୁ ବୟୋଜ୍ୟେଷ୍ଠ କେତେଜଣ ମଧ୍ୟ ଯାଇଥାନ୍ତି ଓ ଦାରନ ପେନୁଙ୍କ ପୂଜା କରିଥାନ୍ତି ।

Digitized by PPRACHIN, SOA

ଯେଉଁଠାରେ ପୂର୍ବରୁ ଦାରନ୍ନ ପେନୁ ପ୍ରତିଷ୍ଠା ହୋଇଥାଏ ସେଠାରେ ପୁଣି ଦାରନ୍ନ ପେନୁ ସ୍ଥାପନ କରିବାକୁ ପଡ଼ ନଥାଏ । କେତେକ ସ୍ଥଳରେ ଗୋଟିଏ ସ୍ଥାନ ଗ୍ରାମ ଅନ୍ୟ ଜାଗାରେ ବସବାସ କରୁଥିବା କନ୍ଧ-ମାନେ ନୂତନଭାବରେ ଦାରନ୍ନ ପେନୁ ସ୍ଥାପନ କରି ନୂତନ ଝାଙ୍କର ନିଯୁକ୍ତି କରିଥାନ୍ତି । ସେହି କ୍ଷେତ୍ରରେ ଭିନ୍ନ ଭିନ୍ନ ବିଧି ଅନୁଷ୍ଠିତ ହୋଇଥାଏ । ଗାଁର ଉପର ମୁଣ୍ଡରେ ଅର୍ଥାତ ଯେଉଁ ଦିଗରୁ ପାଣି ତଳକୁ ଗଡ଼ିଆସିଥାଏ ସେହି ଦିଗରେ ଏକ ସ୍ଥାନ ଦାରନ୍ନ ପେନୁ ସ୍ଥାପନ ନିମନ୍ତେ ନିରୂପିତ ହୋଇ-ଥାଏ । ସାଧାରଣତଃ ଲୋକମାନେ ସ୍ତ୍ରୀମାନେ ଚଳାଗତ କରି ପାରୁ ନଥିବା ସ୍ଥାନହିଁ ଦାରନ୍ନ ପେନୁଙ୍କ ଆସ୍ଥାନ ନିମନ୍ତେ ସ୍ଥିର କରାଯାଇଥାଏ ।

ଜାକେଶ୍ୱ ଆଃପାର ପୂର୍ବଦିନ ଦାରନ୍ନ ପେନୁ ସ୍ଥାପନ କରାଯାଇ-ଥାଏ । ଦାରନ୍ନ ପେନୁ ସ୍ଥାପନ ନିମନ୍ତେ ତିନିଗୋଟି ଲମ୍ବା ଓ ପତଳା ପଥର ଦରକାର ହୋଇଥାଏ । ସେଥିମଧ୍ୟରୁ ତଳେ ଏକ ପଥର ରଖି ତାହାର ତିନି ଦିଗରେ ତିନୋଟି ପଥର ପୋତାଯାଏ । ଉପରକୁ ପଥର ଆନୁମାନିକ ଏକଫୁଟ ରହିଥାଏ । ସାଧାରଣତଃ ଦକ୍ଷିଣ ବା ପଶ୍ଚିମ ଦିଗକୁ ଦାରନ୍ନର ମୁହଁ ରହିଥାଏ । ଅଠର ମୁଠାଁ (ଉଦୟଗିରି ଓ ଗାଇକିଆ) ଅଞ୍ଚଳରେ ଜାନ୍ତ୍ରିପିଣ୍ଡାରେ ଦାରନ୍ନପେନୁ ସ୍ଥାପନ କରିଥାନ୍ତି ଏବଂ ତଳେ ଦିଆଯାଇଥିବା ପଥର ତଳେ ନଦେଇ ଉପରେ ଥୋଇଥାନ୍ତି । ପୂଜା ପରେ ଦାରନ୍ନ ପେନୁଙ୍କ ଆସ୍ଥାନ ଭିତରକୁ କୁକୁଡ଼ା ଆଦି ନ ପଶିବା ପାଇଁ ଅନ୍ୟ ପଥର ଦ୍ୱାରା ମୁହଁ ବନ୍ଦ କରିଥାନ୍ତି । ବଲିଦ ଅଞ୍ଚଳରେ ଗାଁ ଦାଣ୍ଡରେ ଏକ କାଠ ପୋତି ଗ୍ରାମ ଦେବତା ବା କନ୍ଧୁଣୀଦେଇ ନାମରେ ପୂଜା କରିଥାନ୍ତି ।

ଦାରନ୍ନ ପ୍ରତିଷ୍ଠା ଦିନ ପୂଜା ନିମନ୍ତେ କାଞ୍ଜିଆ ଅଣ୍ଡା, ମଦ, ଅରୁଆଚାଉଳ, ହଳଦୀଗୁଣ୍ଡ, ବେଲପତ୍ର ଓ ଶିଆଳିପତ୍ରରେ ହଳଦୀମିଶା ଅରୁଆ ଚାଉଳ ପୁଞ୍ଜି କରାଯାଏ ଏବଂ ତା’ ଉପରେ କାଞ୍ଜିଆ ଅଣ୍ଡା ରଖି ପୂଜା କରାଯାଏ । କୁକୁଡ଼ା ଓ ଘୁଷୁରି ବଳି ଦିଆଯାଏ । ବଳି କୁକୁଡ଼ା ଓ ଘୁଷୁରିର କଲିଜା ବାହାର କରି ନିଆଁରେ ପୋଡି ନଖରେ ଛିଣାଇ ପ୍ରତି ଦେବତାଙ୍କ ନାମ ଧରି ସମର୍ପଣ କରାଯାଇଥାଏ ।

ଦାରନ୍ନ ପେନୁ ସ୍ଥାପନ ପ୍ରକ୍ରିୟା ଶେଷ ହେଲା ପରେ ଗାଁର ତଳ ମୁଣ୍ଡରେ ଗୋଟିଏ ପଥର ପୋତି ତାହାର ମୂଳରେ କିଛି ଶ୍ରେଷ୍ଠ ପଥର

Digitized by PPRACHIN, SOA

ଗଦା କରାଯାଏ ଏବଂ ଉପରୋକ୍ତ ପ୍ରତିମୂର୍ତ୍ତିରେ ପୂଜା କରାଯାଇଥାଏ । ଏହି ପଥରକୁ ମାଲେବାଡ଼ି ସାଇନାଗ (ଚଳନଆଁ) କୁହାଯାଇଥାଏ । ଗାଁର ଉପର ମୂଣ୍ଡରେ ଦାରନ ପେନୁ ଓ ତଳ ମୁଣ୍ଡରେ ମାଲେବାଡ ପେନୁ ରହନ୍ତି ବୋଲି କନ୍ଧମାନଙ୍କ ବିଶ୍ୱାସ ।

ଦାରେନ୍ ପେନୁଙ୍କ ନିକଟ ଥିବା କୁଣ୍ଡଳରେ ବଳିଥିବା ଗୁଡ଼ଳ ଇତ୍ୟାଦି ଧରି ଝାଙ୍କର ଘରକୁ ଫେରନ୍ତି । ଫେରିଲାବେଳେ ଦାରନ ପେନୁଙ୍କ ଆସ୍ଥାନଠାରୁ ସଳିତା ଜଳାଇ କୁଲାରେ ଧରି ଝାଙ୍କର ସମସ୍ତଙ୍କ ଆଗରେ ଚାଲିଥାନ୍ତି ସମସ୍ତଙ୍କ ପଛରେ ଗୁରୁ ସମସ୍ତ ଦେବତାଙ୍କୁ ଚାଲ ଚାଲ କହି ଝାଙ୍କରଙ୍କ ଘରଯାଏ ଆସନ୍ତି । ସେଠାରେ ପୂଜା ହୋଇ ସାରିବା ପରେ ଗୁରୁ ଅନ୍ୟ ଉପବାସୀମାନେ ଝାଙ୍କରଙ୍କ ଅଗଣାରେ ଜଙ୍ଗଲରୁ ଆଣିଥିବା କାଠ ଓ ଛଣ ଦ୍ୱାରା କୁଡ଼ିଆଟିଏ କରିଥାନ୍ତି । ତାହାକୁ ଟୋକରି ପେନୁ କୁଡ଼ି କୁହାଯାଏ ।

ଗୁରୁ ଝାଙ୍କର ଓ ଅନ୍ୟମାନେ ଫେରି ଉକ୍ତ କୁଡ଼ିଆ ମଧ୍ୟରେ ଏକ ଲମ୍ବା ପଥର ଜାକେର ପେନୁଙ୍କ ପ୍ରତିମୂର୍ତ୍ତିଭାବରେ ସ୍ଥାପନ କରି ଉପରୋକ୍ତ ବଳକା ପୂଜା ଉପକରଣ ଓ ଗୁଡ଼ଳ ଚାଉଳର ପିଠା (ମଣ୍ଡା) ସହ ପୂଜା କରନ୍ତି ଏବଂ ଛେଳି ବଳି ଦେଇଥାନ୍ତି ଏବଂ ଉକ୍ତ କୁଡ଼ିଆ ମଧ୍ୟରେ ସମସ୍ତ ଦେବତାଙ୍କୁ ଡାକି ରହିବାକୁ ଅନୁରୋଧ କରନ୍ତି ।

ବଳି ଦିଆଯାଇଥିବା ଛେଳିର ଗୋଟିଏ ଲେଖାଏଁ ଫଡ଼ଆ କୁମ୍ଭାର ଓ ଲୋହାରକୁ ଗୁଡ଼ଳ ସହିତ ଦିଆଯାଇଥାଏ । ସେମାନେ ସେହି ଗାଁରେହିଁ ତାହା ରାନ୍ଧି ଖାଇଥାନ୍ତି । ଉକ୍ତ ମାଂସ ଗାଁ ବାହାରକୁ ନେବା ନିଷେଧ । ବଳକା ମାଂସ ଓ ଭାତ ଝାଙ୍କରଙ୍କ ଅଗଣାରେ ରାନ୍ଧି ସମସ୍ତ ଉପବାସୀ ଗୁରୁ ଝାଙ୍କର ଓ ଝାଙ୍କରାଣୀ ଖାଇଥାନ୍ତି । ଖାଇବା ପୂର୍ବରୁ ଦାନ୍ତ ଘଷନ୍ତି । ଭୋଜନ ଶେଷରେ ଗୁରୁ ଉକ୍ତ କୁଡ଼ିଆରେ ଶୋଇଥାନ୍ତି ଓ ଅନ୍ୟମାନେ ବାହାରେ ଶୁଅନ୍ତି ।

ତା ପରଦିନ ପୂର୍ବଦିନ ପରି ସମସ୍ତେ ଦାନ୍ତ ନଘଷି ଉପବାସ ରହିଥାନ୍ତି । ସନ୍ଧ୍ୟାତାରା ଉଦୟ ହେଲା ପରେ ସ୍ନାନସାରି ଆସି ଝାଙ୍କରଙ୍କ ରନ୍ଧାଘର ଈଶାନ୍ୟ କୋଣରେ ପୂଜା ଆରମ୍ଭ ହୁଏ । ସେଠାରେ କୌଣସି ପ୍ରତିମୂର୍ତ୍ତି ସ୍ଥାପନ କରାଯାଇ ନଥାଏ । ବିବାହବେଳେ ଦରବ ରେ ଯେଉଁ

Digitized by PPRACHIN, SOA

କଣ୍ଢେଇ ଆଦି ଯାଇଥାଏ ସେ ସବୁ ଯନ୍ଥିଥାଏ, ତାହା ନେଇ ପୂଜା ସ୍ଥାନରେ ରଖାଯାଇଥାଏ । ନଚେତ୍ ଅନ୍ୟ କୌଣସି ଜିନିଷ ପୂଜାସ୍ଥାନରେ ରଖାଯାଇ ନଥାଏ । ଏହି ଦିନ ପୂଜା ଶେଷଯାଏ ମଦ୍ୟପାନ କରିବା ମଧ୍ୟ ନିଷେଧ ।

ଉକ୍ତ ଦିନର ପୂଜା ନିମନ୍ତେ କ୍ଷୀର, ଅରୁଆ ଚାଉଳ, ହଳଦୀ ଗୁଣ୍ଡ, ବେଲପତ୍ର, ଶିଆଳି ପତ୍ର ଦରକାର ହୋଇଥାଏ । ବେଲପତ୍ର ଓ ଶିଆଳି ପତ୍ରରେ ହଳଦୀମିଶା ଅରୁଆ ଚାଉଳ ପୁଞ୍ଜି ବାଢ଼ି ତା ଉପରେ କଞ୍ଚା କ୍ଷୀର ଢାଳି ପୂଜା କରାଯାଏ ଏବଂ ଏହାପରେ କୁକୁଡ଼ା ବଳି ଦିଆଯାଇ ପୂର୍ବ ପରି ସେମାନଙ୍କ କଲିଜା ପୋଡି, ନଖରେ ଛିଣ୍ଡାଇ ଦେବତାମାନଙ୍କ ଉଦ୍ଦେଶ୍ୟରେ ସମର୍ପଣ କରାଯାଇଥାଏ ।

କନ୍ଧମାନଙ୍କ ପ୍ରତ୍ୟେକ ପୂଜାରେ ପ୍ରାୟ ପୁଞ୍ଜି ଦେଇ ପୂଜା ହୋଇଥାଏ ଏବଂ ବଳି ପଡିଥାଏ । ବଳି ପଶୁକୁ ବଳି ଦେବା ପୂର୍ବରୁ ହଳଦୀ ପାଣିରେ ଆଉଁଷି ଦେଇ ପୁଞ୍ଜି ଚାଉଳ ଖାଇବାକୁ ଦିଆଯାଇଥାଏ । ବଳି ପଶୁ ଆପେ ଆପେ ପୁଞ୍ଜି ଖାଇଥାନ୍ତି । ଯଦି ପୁଞ୍ଜି ନଖାଏ ତେବେ ପୂଜାରେ କୌଣସି ତ୍ରୁଟି ହୋଇଛି କିମ୍ବା କୌଣସି ଦେବତାଙ୍କୁ ଛାଡି ଦିଆଯାଇଛି ବୋଲି ଧରାଯାଏ ଏବଂ ବଳି ପଶୁକୁ ହାତରେ ପୁଞ୍ଜି ଖୁଆଇ ଦିଆଯାଇ ବଳି ଦିଆଯାଇଥାଏ । ଏହାପରେ ବଳି ପଶୁର କଲିଜା ବାହାର କରି ନିଆଁରେ ପୋଡି ନଖରେ ଛିଣ୍ଡାଇ ପ୍ରତ୍ୟେକ ଦେବତାଙ୍କ ନାମରେ ଅର୍ପଣ କରାଯାଇ ମଦ ଥିପାଯାଇଥାଏ ।

ଘରେ ପୂଜା ସାରିବା ପରେ ମଦ ଥିପାଇଥାନ୍ତି । ଏହା ପରେ ଆବଶ୍ୟକସ୍ଥଳେ ମଦ୍ୟପାନ କରାଯାଇପାରେ । ଘର ଭିତରେ କବାଟ ମେଲା କରି କେବଳ ଝାଙ୍କର ଝାଙ୍କରଣୀ ରହନ୍ତି । ଗୁରୁଙ୍କ ବ୍ୟତୀତ ବାହାରେ ଥିବା ଅନ୍ୟମାନେ ଠେଙ୍ଗା ବାଡ଼ିଧରି ଚୁପ୍ ହୋଇ ରହିଥାନ୍ତି । ଗୁରୁ ସମସ୍ତ ଦେବତାଙ୍କ ନାମ ଧରି ଗୁଲ ଗୁଲ କହି ଘରକୁ ପାଛୋଟି ନେଇଯାନ୍ତି । ଏବଂ ପୁନର୍ବାର ବାହାରକୁ ଆସି ଦେବତା ବାହାରେ ରହିଲେ କି ଦେଖି 'ସମସ୍ତ ଦେବତା ଘର ଭିତରକୁ ଗଲେଣି' ବୋଲି କବାଟ ବନ୍ଦ କରି ଦିଅନ୍ତି । ଠିକ ଏହି ସମୟରେ ବାହାରେ ଠେଙ୍ଗା ବାଡିଧରି ଅପେକ୍ଷା କରିଥିବା ଲୋକେ ଝାଙ୍କେରି ପେନୁଗୁଡିକରେ ପୁଣି ପୂର୍ବଦିନର ପୂଜା ହୋଇଥିବା ପିଠା ଖାଇ 'ଗ୍ଲେର ଗ୍ଲେର' ପାଟି କରି ଉକ୍ତ କୁଡ଼ିଆକୁ ଘେରି

Digitized by PPRACHIN, SOA

ଦିଅନ୍ତି । କେବଳ ଜାକେରପେନୁଙ୍କ ପ୍ରତିମୂର୍ତ୍ତି ଟେଢ଼ଶ ଥାଏ । କୁଡଆଡି ଘଞ୍ଚିଗଲେ ଦେବତାମାନେ ଅସି ସେଠାରେ ରହି ନପାରି ଘର ଭିତରକୁ ଯିବା ପାଇଁ ବାଧ୍ୟହେବେ ବୋଲି କନ୍ଧମାନଙ୍କ ଧାରଣା । ଏହି ପ୍ରକ୍ରିୟା ଶେଷ ହେଲି ବେଳକୁ ପ୍ରାୟ ମଧ୍ୟରାତ୍ରୀ ହୋଇ ଯାଇଥାଏ ।

ଉକ୍ତ ପୂଜାରେ ଝଣ୍ଟିପେନୁ (ମାଟି ଦେବତା) ସୁଗାପେନୁ (ଗୁଆଁ ଦେବତା) ଦର୍ମିଦେନୁ (ସୂର୍ଯ୍ୟ ଦେବତା) ସରୁଦେନୁ (ବନ ଦେବତା) ପିଦେଲ୍‌ଦେନୁ (ବିଜୁଳି ଦେବତା) ଓ ଅନ୍ୟ ସମସ୍ତ ଦେବତାଙ୍କୁ ଆବାହନ କରି ପୂଜା ଦିଆଯାଇଥାଏ । ଝାଙ୍କରଙ୍କ ଘରେ କୋଣ ଦେବତାଙ୍କୁ ମଧ୍ୟ ପୂଜା ଦିଆଯାଇଥାଏ । ଘରେ ସମସ୍ତ ଦେବତାଙ୍କୁ ମଦଥିବାର କ୍ରମ ଅନୁସାରେ ଆହ୍ୱାନ ଦିଆଯାଏ ।

ପୂଜା ଶେଷରେ ଘରର ଏକ କୋଣରେ ଗାତଟିଏ ଖୋଳାଯାଏ । ବଳି ପଶୁଙ୍କୁ ଘର ଭିତରେ କାଟି ଅବଶିଷ୍ଟାଂଶ ଜନ୍ତୁରୁ ଟିକିଏ ମାଂସ ନ ପକାଇ ଉକ୍ତ ଗାତରେ ପୋତାଯାଇଥାଏ । ଉକ୍ତ ଖାଦ୍ୟ କେବଳ ଉପବାସୀ ବ୍ୟକ୍ତିଙ୍କ ବ୍ୟତୀତ ଅନ୍ୟମାନେ ଖାଇପାରିନଥା । ଖାଇବା ଶେଷ ହେବ ଯାଏ ଘର ଭିତରୁ କୌଣସି ଲୋକ ବାହାରକୁ ବାହାରି ନଥାନ୍ତି ।

ଏହି ପୂଜା ଶେଷ ହେଲା ପରେ ଝାଙ୍କରଭାବେ ନିଯୁକ୍ତ ପାଉଥିବା ବ୍ୟକ୍ତି ଝାଙ୍କରଭାବରେ ସ୍ୱୀକୃତ ହୋଇଥାନ୍ତି ଓ ସମ୍ମାନ ପାଇଥାନ୍ତି । ଯେଉଁଦିନ ଗ୍ରାମରେ ତାରିନି ପେନୁ ପୂଜା ହୋଇଥାଏ ସେହି ଦିନ ଝାଙ୍କର, ଝାଙ୍କରଣୀ, ଦେହୁରୀ ଓ ଦେହେରଣୀ ଉପବାସ ରହିଥାନ୍ତି । ଗାଁରେ ନୂଆଁ ଦିଆଗଲେ ପ୍ରଥମେ ଦାରିନି ପେନୁ ଏବଂ ଝାଙ୍କର ଘର ଓଳିତଳେ ଥିବା ଜାକେରି ପେନୁଙ୍କଠାରେ ନୂଆଁ ଦିଆଯାଇ ଝାଙ୍କରଙ୍କ ଦ୍ୱାରା ପୂଜା ହୋଇଥାଏ । ଗ୍ରାମର ଅନ୍ୟାନ୍ୟ ପୂଜା ସମୟରେ ଝାଙ୍କର ନିଜ ହାତରେ ଅରୁଆ ଚାଉଳ କୁଟି ଦେଇଥାନ୍ତି ।

ଜାକେରି ଆଃପା ଦିନ ଝାଙ୍କରଙ୍କ ସହିତ ତାହାଙ୍କ ସାହାଯ୍ୟ କାରୀଭାବରେ ଅନ୍ୟ ଜଣଙ୍କୁ ନିଯୁକ୍ତ ଦେଇଥାନ୍ତି । ଜାକେରି ଆଃପା ଦିନ ଦେହୁରୀ ଓ ଦେହେରଣୀ ମଧ୍ୟ ଉପବାସ କରିଥାନ୍ତି ଓ ସମସ୍ତ କାର୍ଯ୍ୟକ୍ରମରେ ସକ୍ରିୟ ଅଂଶ ଗ୍ରହଣ କରିଥାନ୍ତି । ଉକ୍ତ ଦିନ ଗୁରୁ ସେମାନଙ୍କୁ ବ ନୂଆଁ

Digitized by PPRACHIN, SOA

ହଳଦିଆ ଲୁଗା ପିନ୍ଧିବାକୁ ଦେଇଥାନ୍ତି । ଝିଅଙ୍କ ଘରବାଲାଙ୍କୁ ଏ ଖବର ଜଣା ପଡିଲେ ପରେ ତାହାଙ୍କୁ କେତେକ ବିଧି ନିଷେଧ ମାନି ଚଳିବାକୁ ହୋଇଥାଏ । ସେହି ବିଧି ନିଷେଧ ଝିଅଙ୍କଘରଣୀଙ୍କ ପାଇଁ ବି ପ୍ରଯୁଜ୍ୟ ହୋଇଥାଏ ।

୧) ନିଜ ପାକ ବ୍ୟତୀତ ଅନ୍ୟ ପାକରେ ଖାଇବା ସମ୍ପୂର୍ଣ୍ଣ ନିଷେଧ ।

୨) ଯଦି ବନ୍ଧୁ ଘରକୁ ଯିବା ଦରକାର ହୁଏ ତେବେ ନିଜ ଗାଁରୁ ପାଣି ଧରି ଯିବାକୁ ହୁଏ । ସେଠାରେ ନିଜେ ରାନ୍ଧି ଖାଇବାକୁ ହୁଏ । କେତେକସ୍ଥଳେ କୌଣସି ପୁରୁଷ କିମ୍ବା ରଜୋବତୀ ହୋଇ ନଥିବା ବାଳିକା ରାନ୍ଧିଲେ ଖାଇବାର ନିଷେଧ ନାହିଁ ।

୩) ଯେଉଁ ଘରେ ରନ୍ଧାଯିବ ସେହି ଘର ଭିତରେହିଁ ଖାଇବାକୁ ହେବ । ଯେଉଁ ବ୍ୟକ୍ତି ରାନ୍ଧିବେ ସେ ରାନ୍ଧିବା ପୂର୍ବରୁ ସ୍ନାନ କରି ଶୁଦ୍ଧପୂତ ହୋଇ ପୂର୍ବରୁ ଧୂଆ ହୋଇଥିବା ଲୁଗା ପିନ୍ଧି ରୋଷେଇ କରିବେ ।

ଉପରୋକ୍ତ ପ୍ରକ୍ରିୟା ଜାକେର ଜନ୍ମ ହେବାଯାଏ ପାଳିବାକୁ ହୋଇଥାଏ । ବର୍ଷକ ପରେ ବା ଅଧିକାଂଶସ୍ଥଳେ ଦୁଇ ତିନି ବର୍ଷ ପରେ ଉପରୋକ୍ତ ପ୍ରଣାଳୀରେ ପୂଜା କରିବାକୁ ଜାକେର ଜନ୍ମ କୁହାଯାଏ । କିନ୍ତୁ ଏହି ପୂଜା ଯେଉଁ ସମୟରେ ହୋଇଥାଏ । ସେହି ସମୟରେ ଜାକେର ଜନ୍ମ କରାଯାଇଥାଏ । ଜାକେର ଜନ୍ମ ସରିଲେ ଅନ୍ୟ ଗାଁର ପାଣି ବ୍ୟବହାର କରି ପାରନ୍ତି ଏବଂ ଅନ୍ୟ ଘର ରୋଷେଇରେ ଖିଆଯାଇ ପାରେ ।



Digitized by PPRACHIN, SOA

# ବଳଦବଳି

କନ୍ଧ ସମାଜର ଅଧିକାଂଶ ପୂଜା ପାର୍ବଣ ଗୋଷ୍ଠୀଗତ । ସର୍ବ ସାଧାରଣ ମଙ୍ଗଳ କାମନା, ଉତ୍ତମ ଫସଲ ଗୃହପାଳିତ ପଶୁଙ୍କ ସୁରକ୍ଷା ତଥା ଆରୋଗ୍ୟ କାମନା କରି ପୂଜା ପାର୍ବଣ ଗୁଡିକ କରାଯାଇଥାଏ । ପ୍ରତି ପର୍ବସହ କୌଣସି ନା କୌଣସି ଦେବ ଦେବୀଙ୍କ ପୂଜା କରାଯାଇଥାଏ ଏବଂ ତାହା ସହିତ ଅନ୍ୟ ସମସ୍ତ ଦେବ ଦେବୀ ଓ ପିତୃପୁରୁଷଙ୍କର ବି ଆରାଧନା କରାଯାଇଥାଏ ।

ମଣିଷର ମୃତ୍ୟୁପରେ ଆତ୍ମା ପିତୃପୁରୁଷ ବା ପିଦେରିଙ୍କସହ ସାମିଲ ହୋଇଥାଏ । ଏଥିରୁ ଆତ୍ମା ଅବିନଶ୍ୱର ଏବଂ ସେମାନଙ୍କ ପିତୃଲୋକ ପର କନ୍ଧଙ୍କ ପିଦେର ବିଶ୍ୱାସ ଥିବା ଜଣାଯାଏ । ଏହି ପିଦେର ବା ମୃତ ପିତୃପୁରୁଷଙ୍କ ଆତ୍ମାମାନେ ବି ସମୟେ ସମୟେ କୌଣସି କାରଣରୁ କୁପିତ ହୋଇ ମଣିଷମାନଙ୍କ କ୍ଷତି ସାଧନ କରିଥାନ୍ତି ବୋଲି କନ୍ଧ ସମାଜରେ ବିଶ୍ୱାସ ରହିଛି । ଏଣୁ ପିତୃପୁରୁଷଙ୍କ ଦ୍ୱାରା କୌଣସି ଅନିଷ୍ଟ ହେଉଥିବା ବିଶ୍ୱାସ କରାଗଲେ ବଳଦବଳି ଦେଇ "କଉଲାକା" ବା ଗୋଡ଼ୁପୂଜା ପର୍ବ ପାଳନ କରିଥାନ୍ତି । ଏହି ପୂଜା ଏକ ପାରିବାରିକ ପୂଜା । ଏହା ଗୋଷ୍ଠୀ-ଗତ ପୂଜା ନୁହେଁ ।

ଏହି ପୂଜାକୁ କନ୍ଧ ସମାଜର ପିତୃଶ୍ରାଦ୍ଧ ଭାବରେ ଗ୍ରହଣ କରାଯାଇପାରେ । ଏହିପରି ପିତୃଶ୍ରାଦ୍ଧ ଅନ୍ୟାନ୍ୟ ଆଦିବାସୀ ସଂପ୍ରଦାୟରେ ବି ପ୍ରଚଳିତ ଥିବା ଜଣାଯାଏ । ଶବର ସଂପ୍ରଦାୟରେ ପିତୃପୁରୁଷଙ୍କ ଉଦ୍ଦେ-ଶ୍ୟରେ ମଇଁଷି ବଳିଦେଇ ପ୍ରତି ତିନି ବର୍ଷରେ "ଲାମ୍ବା ଭୋଜି" ପାଳିତ ହୋଇଥାଏ । ଗଦବା ଗୋଷ୍ଠୀରେ ତିନିବର୍ଷ ବ୍ୟବଧାନରେ ମଇଁଷି ବଳି ଦେଇ ପିତୃପୁରୁଷଙ୍କ ପୂଜା କରାଯାଏ । 'ଭୂୟାଁ' ସମାଜରେ ପାଣ ଦ୍ୱାରା ଘଣ୍ଟ ଓ କୁକୁଡ଼ା ବଳିଦେଇ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଭୂତ ପୂଜା କରାଯାଏ । ସେହିପରି ହୋ ଗୋଷ୍ଠୀରେ ପିତୃପୁରୁଷଙ୍କ ପ୍ରତୀକ ଭାବରେ ହେପ୍ରୋମଙ୍କ-ଠାରେ ପ୍ରତିଦିନ ଭାତ ପୂଜା କରାଯାଏ ଏବଂ ସମୟେ ସମୟେ କୁକୁଡ଼ା ବଳି ଦିଆଯାଏ ।

Digitized by PPRACHIN, SOA

"କଡ଼ଲ୍ଲକା" ପାଳନ ନିମନ୍ତେ କନ୍ଧ ସମାଜରେ ନିର୍ଦ୍ଦିଷ୍ଟ ସମୟସୀମା ନାହିଁ । କୌଣସି ପରିବାରରେ ଦୀର୍ଘଦିନ ଧରି ରୋଗବ୍ୟାଧି ଲାଗି ରହିଲେ ଏବଂ ପାରମ୍ପାରିକ ରୀତିରେ ଗୁଣି ଟୋଟକା ଦ୍ୱାରା କିମ୍ବା ଔଷଧ ପ୍ରୟୋଗ ଦ୍ୱାରା ଆରୋଗ୍ୟ ନ ହେଲେ କାରଣ ଜାଣିବା ନିମନ୍ତେ ଗୁରୁ-ଗୁଣିଆଙ୍କ ଆଶ୍ରୟ ନିଆଯାଇଥାଏ । ଗୁରୁଗୁଣିଆ ଦାଆ ହଲାଇ (ଏହି ପଦ୍ଧତିକୁ ଦାପଦେଖା ବୋଲି କୁହାଯାଏ) କିମ୍ବା ଗୃଣ୍ଡଳ ପକାଇ ଦେବତାମାନଙ୍କ ନାମରେ ଯୋଡ଼ା ଯୋଡ଼ା ଗୃଣ୍ଡଳ ପକାଇଥାନ୍ତି । ଯେଉଁ ଦେବତାଙ୍କ ନାମରେ ଶେଷ ଯୋଡ଼ା ଗୃଣ୍ଡଳ ପଡ଼େ ସେହି ଦେବତାଙ୍କ ଅସନ୍ତୋଷ ହେତୁ ଉପରୋକ୍ତ ଦୁର୍ଦ୍ଦଶା ଘଟୁଥିବା ବିଶ୍ୱାସ କରାଯାଏ ଏବଂ ତାହାଙ୍କ ସନ୍ତୋଷ ବିଧାନ ଲାଗି ଆବଶ୍ୟକ ପୂଜା କରାଯାଏ । କିନ୍ତୁ ଯୋଡ଼ା ଯଦି ପିତୃପୁରୁଷ ବା ପିତୋଉ ପିତାଙ୍କ ନାମରେ ପଡ଼େ ତେବେ "କଡ଼ଲ୍ଲକା" ପାଳନ ନିଷ୍ପତ୍ତି ନିଆଯାଏ । କେତେକ କ୍ଷେତ୍ରରେ ଗୁରୁ ଦେବତା ମାଝି (କାଳେସୀଲାଗି) କେଉଁ ଦେବତାଙ୍କ କୋପରୁ କ୍ଷତି ଘଟୁଛି କହନ୍ତି । ଯଦି ପିତୋଉ ପିତାଙ୍କ ଦ୍ୱାରା ଅନିଷ୍ଟ ହେଉଥିବା ଜଣାଯାଏ ତେବେ କଡ଼ଲ୍ଲକା କରିବା ପାଇଁ ମାନସିକ କରାଯାଏ କହାଯାଏ ।

ଏଙ୍ଗା ମାଡାମ୍ ଜାତାମ୍ କେଲେ କୁଡ଼େ ପ୍ରାସା ନାଙ୍ଗା ନିସେଲୁ ଦାଃପା ଦୁଃପି ଗିନା ଟୂକନା ।

ଅର୍ଥ – ଆମର ଦାଆ ଲୁଗା ଯାହା ଅଛି ତୁମ ନିମନ୍ତେ ପାଇଲା ଥାଏ ନେଇ ରହ । ଆମ ଦେହରୁ ରୋଗ ଆରୋଗ୍ୟ କର ।

ଯଦି ମାନସିକ କଲାପରେ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରନ୍ତି ତେବେ ଗୋରୁ ପୂଜା କରାଯାଇଥାଏ । ଏପରି କ୍ଷେତ୍ରରେ ଆକ୍ରାନ୍ତ ପରିବାର ହିଁ ବଳଦ କିଣିଥାନ୍ତି । କିନ୍ତୁ କେତେକ କ୍ଷେତ୍ରରେ ଯଦି ଗୁରୁ କହେ ଯେ ପିତୃଲୋକ ଜୀବ୍ରଇଁରି ବଳଦ ଚାହୁଁଛନ୍ତି ସେପରି ସ୍ଥଳେ ଜୀବଙ୍କ ଘରୁ ବଳଦଟିଏ ଆଣି ପୂଜା କରାଯାଇଥାଏ । ଏହି ପୂଜା ନିମନ୍ତେ କେବଳ ହଡ଼ା ବଳଦ ହିଁ ଲାଗିଥାଏ । ଝିଅର ଗଣ୍ଡି (କନ୍ୟାମୂଲ୍ୟ) ସ୍ଥିର ହେଉଥିବାବେଳେ ପିତୃଲୋକଙ୍କ ପାଇଁ ଏକ ହଡ଼ାବଳଦ ଦିଆଯାଇଥାଏ । କିନ୍ତୁ ସେହି ବଳଦଟି ଯାହା "କଡ଼ଲ୍ଲକା"ରେ ପୂଜା ନିମନ୍ତେ ଅଣାଯାଏ, ତାହା ଆଗରୁ ଗଣ୍ଡି ମଧ୍ୟରେ ଛିଣ୍ଡି ନ ଥାଏ ।

Digitized by PPRACHIN, SOA

"କଉଡ଼ାଳା" ନିମନ୍ତେ ଗୋରୁ ବନ୍ଧିବା ସମୟରେ କୁକୁଡ଼ା ଗୋଟିଏ ଏବଂ ଏକ କୁମ୍ଭା ମଦ ରଖାଯାଏ । ପୂର୍ବରୁ ଏହି ପୂଜା ନିମନ୍ତେ ଗୋରୁ ବଦଳରେ ବନ୍ୟଜନ୍ତୁ ବ୍ୟବହୃତ ହେଉଥିଲା । ବନ୍ୟଜନ୍ତୁଙ୍କ ପରିମାଣ ହ୍ରାସ ତଥା ବନ୍ୟଜନ୍ତୁ ଧରିବା ଅସୁବିଧା ଦୃଷ୍ଟିରୁ ଗୋରୁ ପ୍ରଚଳନ କରାଗଲା । ବର୍ତ୍ତମାନ କେତେକ କ୍ଷେତ୍ରରେ ଛେଳି ବଳିଦେଇ ବି ପୂଜା କରାଗଲାଣି ।

ପୂଜା ସରଞ୍ଜାମ ସଂଗୃହୀତ ହେଲାପରେ ଗୁରୁ ବା ପୁରୋହିତଙ୍କୁ ନିମନ୍ତ୍ରଣ କରାଯାଏ । ଏହି ପୂଜା ନିମନ୍ତେ ପାଣ ଜାତିର ଗୁରୁଙ୍କ ଆବଶ୍ୟକତା ପଡ଼ିଥାଏ । ଯଦି ପାଣ ଜାତିର ଗୁରୁ ମିଳନ୍ତି ନାହିଁ ସେପରି ସ୍ଥଳେ ଜଣେ ପୂଜା ଜାଣିଥିବା ବୟସ୍କ କନ୍ଧଙ୍କ ଦ୍ୱାରା ଉକ୍ତ ପୂଜା କରାଯାଇଥାଏ । ଗୁରୁଙ୍କ ସୁବିଧା ଅନୁସାରେ ସୋମବାର, ବୁଧବାର କିମ୍ବା ଶୁକ୍ରବାର ପୂଜା ନିମନ୍ତେ ସ୍ଥିର କରାଯାଏ ।

ପୂଜା ପୂର୍ବଦିନରୁ ଯେଉଁ ପରିବାରରେ ପୂଜା ହେବ ତାହାଙ୍କ ଘରଦ୍ୱାର ଲିପାପୋଛା ଏବଂ ଲୁଗାପଟା ସଫାସୁତରା କରାଯାଇଥାଏ । ସେହି ଦିନଠାରୁ ଉକ୍ତ ପରିବାର ସର୍ବସାଧାରଣ ବ୍ୟବହାର କରୁଥିବା ଜଳାଶୟରୁ ପାଣି ବ୍ୟବହାର କରିବା ପୂରାପୂରି ନିଷେଧ । କାରଣ ପାଣ ଗୁରୁ ସେହି ଘରେ ଗୋରୁ ପୂଜା କରୁଥିବାରୁ ସେମାନଙ୍କୁ ଅଛୁଆଁ ଭାବେ ଗ୍ରହଣ କରିଥାନ୍ତି ।

ପୂଜା ପୂର୍ବଦିନଠାରୁ ପାଣଗୁରୁ ସେହି ଘରକୁ ଆସି ଅବସ୍ଥାନ କରନ୍ତି । ଗୁରୁ ଆସିଲାପରେ ବଣରୁ ଶିଆଳିପତ୍ର ଆଣିବା ନିମନ୍ତେ ଘରେ ବିଭିନ୍ନ ଦେବାଦେବୀ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ମଦ ଥୁପା (ଟୋପା ଟୋପା ମଦ ଭୂମିରେ) ଯାଏ । ମଦ ଥୁପା ହେଲାପରେ ଗୃହକର୍ତ୍ତା ଶିଆଳି ପତ୍ର ଆଣିବାବେଳେ ଖୋଜି କରି ଏକ ଶ୍ରେଷ୍ଠ ଶିଆଳିପତ୍ର ବି ଆଣିଥାନ୍ତି ।

ଗୃହକର୍ତ୍ତା ଜଙ୍ଗଲକୁ ଗଲାପରେ ପରିବାରର ଅନ୍ୟ ସମସ୍ତେ ଗାଧୋଇ ଲୁଗାପଟା ସଫା କରନ୍ତି ଏବଂ କଞ୍ଚା ଗୁଣ୍ଡଳ ଚୂନା କରନ୍ତି । ଜଙ୍ଗଲରୁ ଆସିଥିବା ଶ୍ରେଷ୍ଠ ଶିଆଳିପତ୍ର ଗୁଣ୍ଡଳ ନୂନାର ପିଠୋଉରେ ବୁଡ଼ାଇ ଘରର ଭିତର, ବାହାର, କାନ୍ଥ, କବାଟ, ଦ୍ୱାରବନ୍ଧ, ଢେଙ୍କି ଇତ୍ୟାଦିରେ ଝୋଟି ଦେଇଥାନ୍ତି । ଏହାପରେ ରନ୍ଧାରନ୍ଧି କରି ଖିଆପିଆ କରାଯାଏ ।

Digitized by PPRACHIN, SOA

ସେହିଦିନ ସନ୍ଧ୍ୟାରେ ଏକ ବଙ୍କା ନଉ ଡଙ୍କା (କଙ୍କେଡ ଲିଙ୍କା ବା ବେକଡଲଙ୍କା) ଜୁଆଳିର ଶେଷ କମ୍ବା (ଜୁଆଳି କଳା) ଗଡ (ଡାଠ ଘର) ଘରେ ଢୋଲି ନିକଟରେ ରଖି ତା ଉପରେ ମଦ ଢଳାଯାଏ । ପାହାଗୁରୁ ବେହେଲଇଡ୍ଡୁ (ଗୁହାଳ ଘର) ଯାହା ଗଡ ଘରର ବାମକୁ ଲାଗି-ଥାଏ ତାହାର ପିଣ୍ଡାରେ ବସନ୍ତ [illegible] ମଝି ଭାଗରେ ମଦ ଓ ଡଙ୍କା ଦେଖା ଯାଇଥାଏ । ଏହାପରେ ଢୋଲି ନିକଟରେ [illegible]ଆଳି ପଦରେ ଗୁଡ଼ଳ ଦେଇ ପିତୃଲୋକଙ୍କ ଉଦ୍ଦେଶ୍ୟରେ ପୂଜା କରାଯାଏ । ଏହି ସମୟରେ ପୂଜା ନିମନ୍ତେ ଉଦ୍ଦିଷ୍ଟ ହଣ୍ଡା ବଳଦଟି ଗୁହାଳ ଘରେ ବନ୍ଧା ଯାଇଥାଏ ।

ଏହାପରେ ପୂଜା ହୋଇଥିବା ବଙ୍କାଡଙ୍କା ଓ ଜୁଆଳି କଳା [illegible]ଟି ଧରି ଗୁରୁ ସେହି ଘରର ପିତୃପୁରୁଷମାନଙ୍କୁ ଗୋଟିଏ ଗୋଟିଏ [illegible]ନଧରି ବଳଦ ମୁଣ୍ଡର ମଝି ପାଖରେ ଧୀରେ ଧୀରେ ବାଡ଼େଇଥାନ୍ତି । [illegible] ଘରର ପିତୃପୁରୁଷଙ୍କ ନାମ ସରିଲେ ସେମାନଙ୍କ ନାମରେ ମଦ ଥୋପାଇ [illegible] ମଦ୍ୟଦାନ କରନ୍ତି । ଏହିପରି ଭାବରେ ସେ ଗ୍ରାମ୍ୟରେ ପଡଶାଘର, [illegible], ଆଖପାଖ ସାହିର, ମାମୁଁ ଘର, ଶ୍ୱଶୁର ଘର, ବନ୍ଧୁବାନ୍ଧବ ଘର, [illegible] ସମସ୍ତ ଘରର ପିତୃପୁରୁଷ ଓ ମୁଠା ବା ଅଞ୍ଚଳ ମଧ୍ୟରେ ଥିବା [illegible]ଙ୍କ ପିତୃଲୋକଙ୍କ ନାମ ଧରି ଡଙ୍କା ଓ ଜୁଆଳି କଳା ଦ୍ୱାରା ଗୁରୁ [illegible] ମୁଣ୍ଡର ମଝି ପାଖରେ ବାଡ଼େଇଥାନ୍ତି ଓ ମଦ ଥୋପାଇଥାନ୍ତି । ଏହି ଏହି ପ୍ରକ୍ରିୟା ରାତି ଶେଷଯାଏ ଚାଲେ । ଗୁରୁ ଯଦି ଉତ୍ତମ ସାଧକ ହୋଇଥାନ୍ତି ତେବେ ସେ ପିତୃଲୋକଙ୍କୁ ବି ଦେଖି ପାରନ୍ତି । ଯଦି ସେ ପିତୃଲୋକଙ୍କୁ ଦେଖି ପାରନ୍ତି ତେବେ 'ଆସିଲେ, ଆସିଲେ' ବୋଲି ପାଟିକରି ମଦ ଥୋପାଇ ଉତ୍ସର୍ଗ କରିଥାନ୍ତି । ସେହିଦିନ ରାତିରେ କନ୍ଧମାନଙ୍କ ବ୍ୟତୀତ ସମସ୍ତ ବୟସ୍କ ବ୍ୟକ୍ତି (ସ୍ତ୍ରୀ ଓ ପୁରୁଷ) ଉପବାସ ରହିଥାନ୍ତି ।

ପରଦିନ ସକାଳୁ ଘରର ପ୍ରତ୍ୟେକ ସଭ୍ୟ ଓ ଗୁରୁଜନ ସ୍ନାନଶୌଚ ସାରି ଫେରିଲେ ପରେ ଢୋଲି ନିକଟରେ ପୂଜା ଦିଆଯାଇଥିବା ପୁଞ୍ଜି ଗୁଡ଼ଳ କୁକୁଡ଼ା ଏବଂ ବଳଦକୁ ଖୁଆଇ ବଳି ଦିଆଯାଇଥାଏ । ପୂର୍ବ କାଳରେ କନ୍ଧମାନେ ଗୋରୁମାଂସ ଖାଉଥିବା ଜଣାଯାଏ । ହିନ୍ଦୁ ସଂସ୍କୃତିର ସଂସ୍ପର୍ଶରେ ଆସି ସେମାନେ ଆଉ ଗୋରୁ ମାଂସ ଖାଉ ନ ଥିବାରୁ ବଳି ଦିଆଯାଇଥିବା କୁକୁଡ଼ାର ମାଂସ ଖାଇଥାନ୍ତି ଓ ପାଣମାନେ ଗୋରୁ ମାଂସ

Digitized by PPRACHIN, SOA

ନେଇଥାନ୍ତି । ପରଦିନ ସେହି ଦେବାଦେବୀଙ୍କ ସମସ୍ତେ ଲୁଚାଇଦେଇ ହଣ୍ଡା ଓ ଘରଦ୍ୱାର ଲିପାପୋଛା କରି ପୁରୁଣା ହାଣ୍ଡି ବାହାର କରି ନୂଆହାଣ୍ଡି ନିଆଇଥାନ୍ତି ଏବଂ ଏହା ପରେ ସେମାନେ ବର୍ଷସାଧାରଣ ଖେଉଦେଇ କରୁ-ଥିବା ଜଳାଶୟରୁ ମାଛ ବ୍ୟବହାର କରିବା ନିମନ୍ତେ ନିଷେଧ ନ ଥାଏ । ପୂଜା ଶେଷ ପରେ ଏଠାରେ ଗୁରୁ ଚୁଲି ଖାଇଥାନ୍ତି ।

ଏହି ପୂଜାରେ ବେଦୋଦେବୀ ନିମନ୍ତେ ବନ୍ଧୁବାନ୍ଧବଙ୍କୁ ନିମନ୍ତ୍ରଣ କରାଯାଇଥାଏ । ଶୁଦ୍ଧ ହେଲାପରେ ସେମାନେ ମଦ୍ୟ ଭକ୍ତ ପରିବାର ସହ ଅସ୍ପୃଶ୍ୟ ଭାବରେ ରହିଥାନ୍ତି । କାର୍ତ୍ତିକ ବଳଦ ପୂଜା କରାଗଲେ ଦିନକ ମଧ୍ୟରେ ପୂଜା ଶେଷ ହୋଇଥାଏ । ସେଠାରେ ଓଝା ନୁଆଙ୍କ କଲାର ଆବଶ୍ୟକତା ନ ଥାଏ । କେବଳ ଡିଆଳ ପର୍ବରେ ଗୁଡ଼ାଳ ପୂଜା କରାଯାଇ ମଦ ଥାପି ବଳି ଦିଆଯାଇଥାଏ ।

କେବେ ଲୋକମାନଙ୍କ ରୋଗବ୍ୟାଧି ହେଉଥିଲେ ବାହାରେ ବା ଭିତର ଘରେ କୁକୁଡ଼ା, ଘୁଷୁରୀ, ବଳିଦେଇ ମଦ ଥାପି ପୂଜା କରାଯାଏ ଘରେ ଖୋଳି ଦିଆଯାଏ ନାହିଁ । ଗୋଟିଏ ଦିନରେ ପୂଜା ଶେଷ ହୋଇଥାଏ । ଘରର ବୟୋଜ୍ୟେଷ୍ଠ ବ୍ୟକ୍ତିଙ୍କ ଦ୍ୱାରା ପୂଜା କରାଯାଏ । ପାଣିଗୁରୁଙ୍କ ଆବ-ଶ୍ୟକତା ପଡ଼େ ନାହିଁ । କେବଳ ସ୍ତ୍ରୀ ପିତୃଲୋକଙ୍କ ନାମରେ ପୂଜାଦେଇ ମଦ ଥାପାଯାଏ ।

ବଳଦ ବଳିର ଆରମ୍ଭ ସମ୍ବନ୍ଧରେ ଏକ ଲୋକ କଥା କନ୍ଧ ସମାଜରେ ପ୍ରଚଳିତ ଅଛି । ତାହା ନିମ୍ନରେ ଦିଆଗଲା —

ପୂର୍ବରୁ ଗୋରୁବଳି ଦେଇ ପୂଜା କରିବା ପ୍ରଥା ନ ଥିଲା । ବହୁତ ଦିନ ତଳେ ଗୋଟିଏ କନ୍ଧ ପରିବାରରେ ରୋଗବ୍ୟାଧି ଲାଗି ରହି-ବାରୁ ସେ କାରଣ ଜାଣିବା ପାଇଁ ଗୁରୁଙ୍କ ଆଶ୍ରୟ ନେଲା । ଗୁରୁ କହିଲେ ପିଦେର ବା ପିତୃଲୋକଙ୍କ ଅସନ୍ତୋଷରୁ ଏପରି ଦୁର୍ଦ୍ଦଶା ପଡ଼ୁଛି । ପିଦେ-ରଙ୍କ ପୂଜା କର । କିନ୍ତୁ କନ୍ଧ ଲୋକଟିର ବଳଦଟିଏ ଆଣିବାର ଶକ୍ତି ନ ଥିଲା ତା ନିଜର ସ୍ୱାର୍ଥ ନିମନ୍ତେ ପୋଷିଥିବା ବଳଦକୁ ବଳିଦେବାକୁ ଅନିଚ୍ଛୁକ ଥିଲା । କାରଣ ବଳଦଟି ନିମନ୍ତେ ତାର ମମତା ଆସି ଯାଇଥିଲା । ଗୋରୁଟିକୁ ବଳି ଦେଲେ ଗୃହବାସ ବ କ୍ଷତିଗ୍ରସ୍ତ ହେବ । ଏପରି ଦ୍ୱନ୍ଦରେ ପଡ଼ି ନିଷ୍ପତ୍ତି

Digitized by PPRACHIN, SOA

ନେଲା ଯେ ସେ ବରଂ ରୋଗ ବ୍ୟାଧିରେ ସଡ଼ିବ କିନ୍ତୁ ନିଜ ଗୋରୁକୁ ବଳି ଦେବ ନାହିଁ ।

ଚୋରୁଟି କନ୍ଧର ମନକଥା ଜାଣିଲା । ମାଲିକର ମଙ୍ଗଳ ନିମନ୍ତେ ଆତ୍ମବଳି ଦେବାପାଇଁ ପ୍ରସ୍ତୁତ ହେଲା ଏବଂ ମାଲିକକୁ କହିଲା ତୁମେ ମୋତେ ପାଳିଛ, ପୋଷିଛ, ତେଣୁ ତୁମର ମଙ୍ଗଳ କାମନା କରିବା ମୋ ପକ୍ଷେ ଉଚିତ ଅଟେ । ତୁମେ ରୋଗବ୍ୟାଧିରେ ସଡ଼ୁଅଛ ଅଥଚ ମୋତେ ବଳିଦେଇ ରୋଗମୁକ୍ତ ହେବ ନାହିଁ, ଏହା ମୁଁ ସହ୍ୟ କରି ପାରୁନାହିଁ । ତୁମେ ମୋତେ ବଳି ଦେଇ ପିତୃ ଲୋକଙ୍କୁ ସନ୍ତୁଷ୍ଟ କରାଅ । ଏହାଦ୍ୱାରା ତୁମର ସର୍ବାଙ୍ଗୀନ ଉନ୍ନତି ହେବା ସଙ୍ଗେ ସଙ୍ଗେ ମୁଁ ବି ତୁମ ଋଣ ଶୁଝିବା ପାଇଁ ସୁଯୋଗ ପାଇବି ।

ବଳଦଠାରୁ ଏପରି ଶୁଣିବା ପରେ କନ୍ଧ ବ୍ୟକ୍ତିଟି ତାକୁ ବଳି ଦେଇ ପିତୃ ଲୋକଙ୍କ ପୂଜା କରି ରୋଗମୁକ୍ତ ହେଲା । ସେହିଦିନଠାରୁ ପିତୃ ପୂଜା ନିମନ୍ତେ ବଳଦ ବଳି କନ୍ଧ ସମାଜରେ ପ୍ରଚଳିତ ହେଲା ।

କନ୍ଧ ସମାଜରେ ଏହା ପରମ୍ପରାଗତ ବିଶ୍ୱାସ । ଏହାକୁ ସହଜରେ ବଦଳାଇ ହେବନାହିଁ । କେତେକ କ୍ଷେତ୍ରରେ ଏହାର ରୂପାନ୍ତରିକରଣ ହେଲାଣି । ସଭ୍ୟତାର ସଂକ୍ରମଣ ଫଳରେ କନ୍ଧ ସମାଜରୁ ବହୁ ଅନ୍ଧ ବିଶ୍ୱାସ ଉଭେଇ ଗଲାଣି । ଏଣୁ ଏହି ପୂଜାର ମଧ୍ୟ ଯେ ଅବସାନ ଘଟିବ ଏଥିରେ ସନ୍ଦେହ ନାହିଁ ।



Digitized by PPRACHIN, SOA

# ସାରଣ୍ଡା ଆଖପା

ପ୍ରତ୍ୟେକ ସମାଜରେ କୌଣସି ଏକ ଅପରାଧରେ ପ୍ରକୃତ ଦୋଷୀକୁ ଚିହ୍ନଟ କରିବା ପାଇଁ ପାଚ ଅଞ୍ଚଳରୁ ସମ୍ଭବତଃ ସଭ୍ୟତାର ଉନ୍ମେଷକାଳରୁ କେତେକ ଅଲିଖିତ ଅଛନ୍ତି ବା ସାମାଜିକ ବିଧି ବ୍ୟବସ୍ଥା ପ୍ରଚଳିତ ଅଛି । ଯଦିଓ ତାହା ସରକାରୀ ଆଇନାନୁମୋଦିତ ନୁହେଁ, ତଥାପି ଗଷ୍ଠିର ସାମାଜିକ ସ୍ୱୀକୃତି(Social Sanction)ଉପରେ ପର୍ଯ୍ୟବେସିତ । ଯେଉଁ ସମସ୍ତରୁ ଗୋଷ୍ଠୀ ମଧ୍ୟରେ ଶାନ୍ତି ଶୃଙ୍ଖଳା ରକ୍ଷା କରିବା ସହିତ ଗୋଷ୍ଠୀର ଏକତା ଓ ସଂହତି ରକ୍ଷା ନିମନ୍ତେ କେତେକ ସାମାଜିକ ଆଇନ ପ୍ରଚଳିତ କରାଗଲା ତନ୍ମଧ୍ୟରେ ଶପଥ (Oath) କରାଇ କିମ୍ବା କୌଣସି ପରୀକ୍ଷା ଦେଇ (Ordeal) ଦୋଷୀକୁ ଚିହ୍ନଟ କରାଇବା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରକ୍ରିୟା । ପରବର୍ତ୍ତୀ କାଳରେ ତାହା ପରମ୍ପରାଗତ ହୋଇ ଧର୍ମ ମଧ୍ୟରେ ସାମିଲ ହୋଇଗଲା ଏବଂ ଆଦିବାସୀ ସମାଜରେ ସେଗୁଡିକ ଅଦ୍ୟାବଧି ଧାର୍ମିକ ପୃଷ୍ଠଭୂମି ଉପରେ ପ୍ରତିଷ୍ଠିତ ରହିଛି । ଏହି ଶପଥ କରିବା (Oath and Ordeal) ପ୍ରକ୍ରିୟା ବିଭିନ୍ନ ପ୍ରଜାତିକ ଗୋଷ୍ଠୀ ମଧ୍ୟରେ ସାମାଜିକ ଆଇନରୂପେ କାର୍ଯ୍ୟ କରିଥାଏ । ଏହା ଦ୍ୱାରା ସର୍ବସାଧାରଣ ସମକ୍ଷରେ ଦୋଷୀ ସାବ୍ୟସ୍ତ ହେଲାଭଳି ଲଜ୍ଜାଜନକ ପରିସ୍ଥିତିରୁ ଦୂରେଇ ରହିବା ପାଇଁ ଗୋଷ୍ଠୀର ପ୍ରତ୍ୟେକ ସଭ୍ୟ ଚେଷ୍ଟିତ ରହନ୍ତି । ଫଳରେ ସମାଜରେ ଅପରାଧ ପ୍ରବଣତା ହ୍ରାସ ହୋଇଥାଏ ଓ ସାମାଜିକ ଶାନ୍ତି ବଜାୟ ରହିଥାଏ ।

କ୍ରମଶଃ ଶାସକମାନେ ଅଧସ୍ତନ କର୍ମଚାରୀଙ୍କ ଦ୍ୱାରା ଦୋଷୀ-ଭାବେ ଧୃତ ଅପରାଧୀଙ୍କୁ ସର୍ବସାଧାରଣ ସମକ୍ଷରେ ବିଭିନ୍ନ ପ୍ରକାର ଦଣ୍ଡ ଦେବା ବିଧି ପ୍ରଚଳିତ ହେଲା । ଉକ୍ତ ଦଣ୍ଡ ଶାସକଙ୍କ ମନ ମୁତାବକ ହେଉଥିଲା କାରଣ ଏଥିନିମନ୍ତେ କୌଣସି ନିର୍ଦ୍ଦିଷ୍ଟ ବିଧି ନଥିଲା । ଶାସକଙ୍କ ଆଦେଶରେ ସାମାନ୍ୟ ଅପରାଧ ପାଇଁ ଅପରାଧୀର ଅଙ୍ଗଛେଦନ, ବେତ୍ରାଘାତ କିମ୍ବା ମୃତ୍ୟୁଦଣ୍ଡ ମଧ୍ୟ ଦିଆଯାଉଥିଲା । ପୁଣି କେତେକ କ୍ଷେତ୍ରରେ ରାଜ କର୍ମଚାରୀମାନଙ୍କୁ ପ୍ରଲୋଭିତ ବା ପ୍ରଭାବିତ କରି ପ୍ରକୃତ ଦୋଷୀ ଖସି ଯାଉଥିଲା ଏବଂ ନିର୍ଦ୍ଦୋଷୀ ବ୍ୟକ୍ତି ଦଣ୍ଡ ଭୋଗୁଥିଲା ।

Digitized by PPRACHIN, SOA

ରାଜା ଏବଂ ରାଜ କର୍ମଚାରୀମାନଙ୍କ ମନମୁଖୀ ଦଣ୍ଡ ପ୍ରଥାକୁ ନିୟନ୍ତ୍ରିତ କରିବା ନିମନ୍ତେ କାଳକ୍ରମେ କେତେକ ଲିଖିତ ଆଇନ ପ୍ରଣୟନ କରାଗଲା । କିନ୍ତୁ ଏହାଦ୍ୱାରା ଅପରାଧର ଉଚିତ ସାକ୍ଷୀଙ୍କ ବୟାନ ଉପରେ ନିର୍ଭର କଲା । କେତେକ କ୍ଷେତ୍ରରେ ମିଥ୍ୟାସାକ୍ଷ୍ୟ ବଳରେ ନିର୍ଦ୍ଦୋଷୀ ବ୍ୟକ୍ତି ଦଣ୍ଡ ପାଇଲା ଏବଂ ଦୋଷୀ ସାକ୍ଷୀମାନଙ୍କୁ ପ୍ରଲୋଭିତ କରି ଖସି ଯାଇ ପାରିଲା । ଏଣୁ ଆଇନ ପ୍ରଣୟନ କରି ଦୋଷୀକୁ ଦଣ୍ଡ ଦେବା ନିମନ୍ତେ ଅଲୌକିକତାକୁ ଯେତେବେଳେ ସ୍ୱୀକାର କରାଗଲେ ମଧ୍ୟ ପୂର୍ବରୁ ପ୍ରଚଳିତ ଥିବା ଶପଥ କରିବା (Oath and Ordeal) ପ୍ରଭୃତି ଏଯାଏ ପ୍ରତ୍ୟେକ ସମାଜରେ ଗଭୀର ସମର୍ଥନ ପ୍ରାପ୍ତ ଲକ୍ଷ୍ୟ କରାଯାଏ । ବର୍ତ୍ତମାନ ସୁଦ୍ଧା ହିନ୍ଦୁ ସମାଜରେ ଜଗନ୍ନାଥଙ୍କ ପ୍ରସାଦ ବା ଖଣ୍ଡା ଛୁଇଁ ଶପଥ କରିବା, ପୁଅ ମୁଣ୍ଡ ଛୁଇଁ ବା ଭାଗବତ ଗୀତା ଛୁଇଁ ଶପଥ କରିବାକୁ ପ୍ରକୃତ ଦୋଷୀ ପଶ୍ଚାତପଦ ହୋଇଥାଏ । ସେହିପରି ଦେବ ମନ୍ଦିରରେ ଦୀପ ଜାଳି, ଗୁଣିଆ ବିଦ୍ୟା ବା ନଖ ଦର୍ପଣ ଦ୍ୱାରା ଦୋଷୀ ଠାବ ପ୍ରକ୍ରିୟା ହିନ୍ଦୁ ସମାଜରେ ଏଯାଏ ଲୋପ ପାଇ ନାହିଁ ।

ବନ୍ଧ ସମାଜରେ ଶପଥ କରିବା ବା ନିୟମ ଧରିବା ନିମନ୍ତେ "ସାରଡ୍ଡା ଆଃପା" ଅନୁଷ୍ଠିତ ହୋଇଥାଏ ଏବଂ ଏହାପ୍ରତି ଗଭୀର ସାମାଜିକ ମାନ୍ୟତା ଥିବାରୁ ଏହାର ଗୁରୁତ୍ୱ ଅଧିକ । ସାଧାରଣତଃ ଜମିଜମା ଗୋଲମାଲ, ଚୋରି, ସ୍ତ୍ରୀର ଚରିତ୍ରରେ ସନ୍ଦେହ ହେଲେ "ସାରଡ୍ଡା ଆଃପା" ଅନୁଷ୍ଠିତ ହୋଇଥାଏ । ଯେଉଁ ବ୍ୟକ୍ତି ଦୋଷୀ ସାବ୍ୟସ୍ତ ହୁଏ ଗ୍ରାମ ସଭା ତାହା ଉପରେ ଦଶ ଟଙ୍କାଠାରୁ ଏକଶତ ଟଙ୍କା ପର୍ଯ୍ୟନ୍ତ ଅର୍ଥଦଣ୍ଡ ଦେଇଥାନ୍ତି । ସମ୍ପୃକ୍ତ ପକ୍ଷ ଗ୍ରାମ ସଭାର ନିଷ୍ପତ୍ତିକୁ ମାନି ନେବାକୁ ବାଧ୍ୟ ହୋଇଥାଏ । ଯଦି କୌଣସି କ୍ଷେତ୍ରରେ ଅବାଧ୍ୟ ହୁଏ, ତାହାପ୍ରତି ସାମାଜିକ ବାସନ୍ଦ ଲାଗୁ କରାଯାଇଥାଏ ।

"ସାରଡ୍ଡା-ଆଃପା" ସାଧାରଣତଃ ତିନି ପ୍ରକାର । ୧. ସାରଡ୍ଡା ଆଃପା ୨. ସାରଡ୍ଡା ମେଃପା ୩. ସାରଡ୍ଡା କେଃପା । ବାଦୀ ଓ ପ୍ରତିବାଦୀଙ୍କ ଉପସ୍ଥିତିରେ ଦୋଷୀ ଠାବ ନିମନ୍ତେ ପରୀକ୍ଷା କରିବା ପ୍ରକ୍ରିୟାକୁ ସାରଡ୍ଡା ଆଃପା କୁହାଯାଏ । ସାରଡ୍ଡା ଆଃପାରେ ଯୋଗ ଦେବା ପୂର୍ବରୁ କାଳେ ଅଜ୍ଞାତରେ ନଜର ଭୁଲ ଅଛି କି ନାହିଁ ଜାଣିବା ନିମନ୍ତେ ଯେଉଁ ପ୍ରଣାଳୀ ଅବଲମ୍ବନ କରାଯାଇଥାଏ ତାହାକୁ ସାରଡ୍ଡା ମେଃପା କୁହାଯାଏ । କୌଣସି

Digitized by PPRACHIN, SOA

ନିରପରାଧ ବ୍ୟକ୍ତି ଯଦି ଦୋଷୀ ସାବ୍ୟସ୍ତ ହୋଇଯାଏ କିମ୍ବା ଦୋଷୀ ବ୍ୟକ୍ତି ପ୍ରତିଶୋଧ ନେବା ନିମନ୍ତେ ଯେଉଁ ପ୍ରଣାଳୀ ଅବଲମ୍ବନ କରନ୍ତି ତାହାକୁ ସାରତ୍ତା ବେଃପା କହିଥାନ୍ତି ।

ନିମ୍ନରେ ଉପରୋକ୍ତ ତିନୋଟି ପ୍ରଣାଳୀଠାରେ ଏହି ଲେଖକ ଦ୍ୱାରା ସଂଗୃହୀତ କେତେକ ସାରତ୍ତା-ଅଃପା, ସାରତ୍ତା ନେଃପା ଓ ସାରତ୍ତା ବେଃପାର ବର୍ଣ୍ଣନା କରାଯାଉଛି ।

**୧. ରଡ଼ ନିଆଁରେ ତେଲି ପ୍ରମାଣ କରିବା :—** ଏହି ପ୍ରକ୍ରିୟାକୁ କୁଇ ଭାଷାରେ "କାଧାତାନା ଝିଆକା ନାଙ୍ଗା ସାରତ୍ତା ଅଃପା" କୁହାଯାଇ ଥାଏ । ସ୍ତ୍ରୀର ଚରିତ୍ର ଉପରେ ସ୍ୱାମୀର ସନ୍ଦେହ ହେଲେ ଏହି ପ୍ରଣାଳୀରେ ସ୍ତ୍ରୀର ସତୀତ୍ୱ ପରୀକ୍ଷା କରାଯାଇଥାଏ । ଏହା ସୀତାଙ୍କ ଅଗ୍ନି ପରୀକ୍ଷାର ରୂପାନ୍ତର ଭଳି ମନେ ହୁଏ ।

ସ୍ତ୍ରୀର ଚରିତ୍ର ଉପରେ ସ୍ୱାମୀର ସନ୍ଦେହ ସୃଷ୍ଟି ହୋଇ ମନୋମାଳିନ୍ୟ ଘନୀଭୂତ ହେଲା ପରେ ଗ୍ରାମ ମୁଖ୍ୟଙ୍କ ନିକଟରେ କଥା ପଡ଼େ ଏବଂ ତାହାଙ୍କ ପରାମର୍ଶ କ୍ରମେ ଆପତ୍ତିକାରୀ ସାରତ୍ତା ଅଃପା ନିମନ୍ତେ ରାଜି ହେଲେ ସେଥି ନିମନ୍ତେ ଦିନ ଧାର୍ଯ୍ୟ କରାଯାଏ । ନିର୍ଦ୍ଦିଷ୍ଟ ଦିନ ସ୍ତ୍ରୀର ଭାଇକୁ ସାରତ୍ତା ଅଃପାରେ ସହଯୋଗ କରିବା ପାଇଁ ଡକାଯାଏ । କାରଣ ସ୍ତ୍ରୀର ଭାଇ ରଡ଼ ନିଆଁରେ ନିଜ ଭଉଣୀର ଚରିତ୍ର ନିର୍ମଳ କିନା ପରୀକ୍ଷା ଦେବାର ବାଧ୍ୟ ରହିଛି ।

ଏହି ସାରତ୍ତା ଅଃପା ନିମନ୍ତେ ଗ୍ରାମର ପ୍ରକାଶ୍ୟ ସ୍ଥାନରେ ଆଠହାତ (ବାରଫୁଟ) ଲମ୍ବା ଏବଂ ଦୁଇ ହାତ (ତିନିଫୁଟ) ଓସାର ଏବଂ ଏକ ହାତ (ଦେଡ଼ଫୁଟ) ଗଭୀର ବିଶିଷ୍ଟ ଏକ ଗାତ ଖୋଳାଯାଏ । ନିର୍ଦ୍ଦିଷ୍ଟ ଦିନ ସକାଳୁ ଉକ୍ତ ଗାତରେ କାଠଗଡ଼ ଦେଇ ନିଆଁ ଜଳାଯାଏ । ଉକ୍ତ ଗାତ ନିଆଁରେ ଭର୍ତ୍ତି ହେଲାଯାଏ ଜଳାଯାଏ । ନିଆଁ ନ ଲିଭିବା ପାଇଁ କୁଲାରେ ବିଞ୍ଚାଯାଉଥାଏ ।

ଉକ୍ତ ସ୍ଥାନରେ ଗ୍ରାମ ମୁଖ୍ୟ ଓ ସମସ୍ତ ଗ୍ରାମବାସୀଙ୍କ ସମେତ ଗୁରୁବାଦୀ, ଅଭିଯୁକ୍ତା ସ୍ତ୍ରୀ ଓ ପ୍ରମାଣ ଦେବା ନିମନ୍ତେ ଅଭିଯୁକ୍ତାର ଭାଇ ଉପସ୍ଥିତଥାନ୍ତି । ଅଭିଯୁକ୍ତାର ଭାଇ ଲେଙ୍ଗୁଟି ପିନ୍ଧି ଏକ ପାର୍ଶ୍ୱ । ବାମ

Digitized by PPRACHIN, SOA

କାନ୍ଧରେ ପକାଇ ତାହାର ବେଣ୍ଟକୁ ବାମ ହାତରେ ଧରିଥାଏ । ସେ ଦୁଇ ଗୋଡ଼ର ଅଣ୍ଟୁ ପାଏ ଜଡ଼ା ତେଲ ଲଗାଇ ତାହା ଉପରେ କଅଁଳ ଅଶ୍ୱସ୍ଥ ପତ୍ର ଦେଇ ସାତଖିଅ ନୂଆଁ ସୂତା ଗୁଡ଼ାଇ ନିଆଁରେ ଚାଲିବା ନିମନ୍ତେ ପ୍ରସ୍ତୁତ ହୋଇଥାଏ ।

ଗୁରୁ ନିଆଁ ନିକଟରେ ପୂଜା ଦେଇସାରି ଅଭିଯୁକ୍ତାର ଭାଇକୁ ନିଆଁ ଉପରେ ଚାଲିବା ନିମନ୍ତେ ଆଦେଶ ଦେଇଥାନ୍ତି । ତାହା ପୂର୍ବରୁ ପୁଣି, ଥରେ ଅଭିଯୁକ୍ତାକୁ ସେ ଦୋଷୀ କି ନିର୍ଦ୍ଦୋଷ ପଚରା ଯାଇଥାଏ । ସେ ନିର୍ଦ୍ଦୋଷ ବୋଲି କହିଲେ ଅଭିଯୁକ୍ତାର ଭାଇକୁ ନିଆଁରେ ଚାଲି ପ୍ରମାଣ ଦେବା ନିମନ୍ତେ ଗ୍ରାମମୁଖ୍ୟ ଆଦେଶ କରନ୍ତି । ଏହି ସମୟରେ ଅଭିଯୁକ୍ତାର ଭାଇ ସମସ୍ତଙ୍କ ସମ୍ମୁଖରେ ଭଉଣୀ ଦୋଷୀ କି ନିର୍ଦ୍ଦୋଷ ପଚାରିଥାଏ । ସେ ନିର୍ଦ୍ଦୋଷ ବୋଲି କହିଲେ ଅଭିଯୁକ୍ତାର ଭାଇ ନିଆଁ ଉପରେ ଚାଲି ସାତଥର ଏପଟରୁ ସେପଟକୁ ଯାଏ ଏବଂ ସେପଟରୁ ଏପଟକୁ ଆସେ । ଯଦି ଭଉଣୀ ନିର୍ଦ୍ଦୋଷ ଥାଏ ତେବେ ଭାଇର ଗୋଡ଼ରେ କିଛି କ୍ଷତ ହୁଏ ନାହିଁ । ଯଦି ଭଉଣୀ ଦୋଷୀ ପ୍ରମାଣିତ ହୁଏ ତେବେ ଭାଇ ନିଆଁରୁ ବାହାରି ଆସି ନିଜେ ଧରିଥିବା ଫାର୍ସାରେ ଭଉଣୀକୁ ସମସ୍ତଙ୍କ ସାମ୍ନାରେ ହାଣି ଦୁଇଖଣ୍ଡ କରିଦିଏ । ଏପରି ଏକ ଘଟଣା ଜି. ଉଦୟଗିରି ଥାନା ଗ୍ରେସିଙ୍ଗିଆ ଗ୍ରାମରେ ଦେଖିଥିବା ନିଖିଳ ଭାରତ କୁଇ ସମାଜ ୟୁନିଅନର ସାଧାରଣ ସମ୍ପାଦକ ଶ୍ରୀ ସତ୍ୟନାରାୟଣ ଜେନା (କଳିଙ୍ଗା)ଙ୍କଠାରୁ ପ୍ରକାଶ ।

**୬. ଟକମକ ଫୁଟୁଥିବା ଗୋବର ପାଣିରେ ହାତ ବୁଡ଼ାଇ ସତ୍ୟତା ପ୍ରମାଣ କରିବା:—** ଗ୍ରାମରେ ଚୋରି ହୋଇ ଆସାମୀ ଧରା ନ ପଡ଼ିଲେ ଏହି ଉପାୟରେ ଦୋଷୀ ଚିହ୍ନଟ କରାଯାଏ । ଗରମ ଗୋବର ପାଣିରେ ହାତ ବୁଡ଼ାଇବା ଦ୍ୱାରା ଦୋଷୀର ହାତ ଫୋଟକା ହୋଇ ଯାଇଥାଏ ।

ଗ୍ରାମସଭାର ବିଚାରରେ ପ୍ରକୃତ ଦୋଷୀ ଚିହ୍ନଟ ହୋଇ ନ ପାରିଲେ ଏହି ଉପାୟ ଅବଲମ୍ବନ କରିବା ପାଇଁ ନିଷ୍ପତ୍ତି ନିଆଯାଇଥାଏ । ସଙ୍ଗେ ସଙ୍ଗେ ଏକ ନୂଆଁ ହାଣ୍ଡି ଅଣାଯାଇ ପାଣି ଭର୍ତ୍ତି କରାଯାଇ ଗୋବର ଗୋଳାଯାଏ ଏବଂ ଏକ ତମ୍ବା ପଇସା ପକାଯାଏ । ଏହା ପରେ ହାଣ୍ଡିକୁ ଚୁଲ୍ଲୀରେ ବସାଇ ପାଣିକୁ ଗରମ କରାଯାଏ । ପାଣି ଟକମକ ଫୁଟିଲାପରେ

Digitized by PPRACHIN, SOA

ଜଣ ଜଣ କରି ଉକ୍ତ ହାଣ୍ଡିରେ ହାତ ବୁଡ଼ାଇ କମ୍ପା ଦେଉଛି କି ହାଓ କରିବାକୁ କୁହାଯାଏ । ଉକ୍ତ ସ୍ଥାନରେ ଜଣେ ଗୁରୁ ବସିଥାନ୍ତି ଏବଂ ଯେଉଁ ଲୋକ ହାତ ବୁଡ଼ାଇବାକୁ ଯାଏ ତାହା ନାମରେ କିଛି ଚାଉଳ ହାଣ୍ଡି ଉପରକୁ ଫିଙ୍ଗି କହୁଥାନ୍ତି ଯେ "ଅମୁକ ଲୋକ ଯଦି ଦୋଷୀ ତାହାର ହାତ ଫୋଟକା ହେଉ, ଯଦି ନିର୍ଦ୍ଦୋଷୀ ତେବେ କିଛି ନ ହେଉ ।" ଗୁରୁ ଦୋଷୀଲୋକ ନାମରେ ଚାଉଳ ଫିଙ୍ଗିଲାକ୍ଷଣି ହାଣ୍ଡିର ପାଣି ଉଚ୍ଛୁଳିପଡ଼େ ଏବଂ ସେ ହାତ ବୁଡ଼ାଇଲେ ତାହାର ହାତ ଫୋଟକା ହୋଇ ଯାଇଥାଏ । ନିର୍ଦ୍ଦୋଷ ବ୍ୟକ୍ତି ହାତ କିଛି ହୁଏ ନାହିଁ । ନିଖିଳ ଭାରତ କୃଷି ସମାଜ ୟୁନିଅନର ସାଧାରଣ ସମ୍ପାଦକ ଶ୍ରୀ ସତ୍ୟନାରାୟଣ ଜେନା (କଳାଙ୍ଗ) ପିଲା ଦିନେ ଏପରି ଏକ ଅନୁଷ୍ଠାନରେ ଅଂଶଗ୍ରହଣ କରିଥିବା ପ୍ରକାଶ କରନ୍ତି ।

**୩. ଟଗମଗ ଫୁଟୁଥିବା ପାଣିରେ କୁକୁଡ଼ାର ଗୋଡ଼ ବୁଡ଼ାଇ ସତ୍ୟତା ପ୍ରମାଣ କରିବା :-** ସାଧାରଣତଃ ଦୁଇ ପକ୍ଷର ଗୋଳମାଳ କିମ୍ବା ଜମିଜମା ସମ୍ପର୍କୀୟ ବିବାଦରେ ପ୍ରକୃତ ଦୋଷୀକୁ ଚିହ୍ନଟ କରିବା ନିମନ୍ତେ ଏହି ଉପାୟ ଅବଲମ୍ବନ କରାଯାଇଥାଏ । ଗ୍ରାମର ଭଦ୍ର ବ୍ୟକ୍ତିମାନେ ଏକ ନୂଆଁ ହାଣ୍ଡିରେ ପାଣି କିମ୍ବା ତେଲର ପାଣି ଭର୍ତ୍ତି କରାଇ ନିଆଁରେ ବସାଇ ଟଗମଗ ଫୁଟିଲା ଯାଏ ଗରମ କରାଯାଏ । ପାଣି ଫୁଟିଲାପରେ ଉଭୟ ପକ୍ଷରୁ ଆସିଥିବା ଦୁଇଟି କୁକୁଡ଼ାର ଗୋଡ଼ ଦୁଇଟି ବୁଡ଼ାଯାଏ । କୁକୁଡ଼ା ବୁଡ଼ାଇବା ପୂର୍ବରୁ ଗୁରୁ ମନ୍ତ୍ର ପଢ଼ି ମଦ ଥାପନ୍ତି (ମାଟିରେ ଠୋପା ଠୋପା ମଦ ଢାଳନ୍ତି) ଏବଂ ଚାଉଳ ଫିଙ୍ଗନ୍ତି । ଉକ୍ତ ତେଲ ପାଣିରେ କୁକୁଡ଼ାର ଗୋଡ଼ ବୁଡ଼ାଇଲା ପରେ ଦୋଷୀ ପକ୍ଷ କୁକୁଡ଼ା ଗୋଡ଼ରୁ ଛାଲ ଉଖୁଡ଼ି ଯାଇଥାଏ ଏବଂ ନିର୍ଦ୍ଦୋଷୀ ପକ୍ଷ କୁକୁଡ଼ାର କିଛି କ୍ଷତି ହୋଇ ନ ଥାଏ ।

ଏପରି ଏକ ଘଟଣା ଟିକାବାଲି ଥାନା ଅନ୍ତର୍ଗତ ଉପରଖୋଲ ମୌଜାରେ ଦେଖିଥିବା ଶ୍ରୀ ଗୋକୁଳଚନ୍ଦ୍ର ଦାଶ (ଟିକାବାଲି) ପ୍ରକାଶ କରନ୍ତି । ତାହାଙ୍କ କହିବା ଅନୁଯାୟୀ ଟିକାବାଲି ନିକଟସ୍ଥ ବୁଦୁଗୁଡ଼ାଖି ମୌଜାର ମାନସିଂ କହଁରଙ୍କ କିଛି ଜମି ଉପରଖୋଲ ମୌଜାରେ ଥିଲା । ଉପରଖୋଲ ମୌଜାର କିଛି ଲୋକ ଉକ୍ତ ଜମିକୁ ଜବରଦସ୍ତ ଦଖଲ କରୁଥିଲେ ଏବଂ ସେହି ଜମି ମାନସିଂ କହଁରଙ୍କର ନୁହେଁ ବୋଲି କହୁଥିଲେ । ସେହି

Digitized by PPRACHIN, SOA

ସମସ୍ତଙ୍କର ଜମି ବର୍ଦ୍ଧାବସ୍ତ ହୋଇ ନ ଥିବାରୁ ଭଦ୍ରବ୍ୟକ୍ତିମାନଙ୍କ ପକ୍ଷରେ ଜମିର ମାଲିକାନା ସ୍ଥିର କରିବା କଷ୍ଟକର ହେଲା । ଏ ପୂ ଉପରୋକ୍ତ ପଦ୍ଧତି ଅନୁସୃତ କରାଗଲେ ଓ ମାନକିଂ ଜମିର ନଯୁକ୍ତ ହେଲେ । ଏହି ମାମଲା ନଷ୍ପତ୍ତି ନିମନ୍ତେ ଶ୍ରୀ ଗୋକୁଳଚନ୍ଦ୍ର ଦାଶ ଭଦ୍ରବ୍ୟକ୍ତି ଭାବରେ ନିମନ୍ତ୍ରିତ ହୋଇଥିବା ପ୍ରକାଶ କରନ୍ତି ।

୪. ପାଣିରେ ବୁଡ଼ି ସତ୍ୟତା ପ୍ରମାଣ ଲଢ଼େଇ :— ଗ୍ରାମସଭା ଦ୍ୱାରା କୌଣସି ବିବାଦର ସମାଧାନ ହୋଇ ନ ପାରିଲେ ବାଘ ଓ ପ୍ରତିବାଘ ଉଭୟ ପକ୍ଷରୁ ଜଣେ ଲେଖାଏଁ ବ୍ୟକ୍ତିଙ୍କୁ ପାଣିରେ ବୁଡ଼ାଇ ଦୋଷୀ ଚିହ୍ନଟ କରାଯାଇଥାଏ । ସେଥିନିମନ୍ତେ ନିର୍ଦ୍ଦିଷ୍ଟ ଦିନଟିକୁ ଉଭୟ ପକ୍ଷଙ୍କୁ ଜଣାଇ ଦିଆଯାଏ । ନିର୍ଦ୍ଦିଷ୍ଟ ଦିନ ପାଣିରେ ବୁଡ଼ିବା ନିମନ୍ତେ ଉଭୟ ପକ୍ଷ ଜଣେ ଲୋକ ଠିକ କରିଥାନ୍ତି ଏବଂ ଉକ୍ତ ଦିନ ସକାଳୁ ବାଘ, ପ୍ରତିବାଘ, ଓ ଲୋକଙ୍କ ସହିତ ଗ୍ରାମ ମୁଖ୍ୟଙ୍କଠାରେ ଉପସ୍ଥିତ ହୁଅନ୍ତି । ବୁଡ଼ିବା ନିମନ୍ତେ ଠିକ ହୋଇଥିବା ବ୍ୟକ୍ତିଦ୍ୱୟ ଉକ୍ତ ଦିନ ସକାଳୁ ଦାନ୍ତଘଷି ନ ଥାନ୍ତି ଏବଂ ଉପବାସ ଥାନ୍ତି । ଏହି ପ୍ରଣାଳୀରେ ଦୋଷୀ ଚିହ୍ନଟ ନିମନ୍ତେ ପ୍ରତିବାଘ ବୁଡ଼ିବା ନିପୁଣ ନ ଥିବାରୁ ଅନ୍ୟ ଦୁଇଜଣ ପାଣିରେ ବୁଡ଼ିବା ନିମନ୍ତେ ଠିକ କରାଯାଇଥାଏ ।

ବାଘ, ପ୍ରତିବାଘ ଓ ଗ୍ରାମ ମୁଖ୍ୟଙ୍କଠାରୁ ଗୋଟିଏ ଲେଖାଏଁ କାଞ୍ଜିଆ ଅଣ୍ଡା ଆଣି କଚ୍ଚା ଅରୁଆ ଚାଉଳ, ହଳଦିଗୁଣ୍ଡ, ମଦ ଓ କ୍ଷୀର ଧରି ଜଣେ କିମ୍ବା ଦୁଇଜଣ ଗ୍ରାମବାସୀ ଗୁରୁଙ୍କ ସହିତ ବାଘ ପ୍ରତିବାଘ ଉଭୟ ପକ୍ଷର ବୁଡ଼ାଳୀଙ୍କୁ ସାଙ୍ଗରେ ଧରି ନିର୍ଦ୍ଦିଷ୍ଟ ଜଳାଶୟ ନିକଟକୁ ଯାଇଥାନ୍ତି । ଉକ୍ତ ଜଳାଶୟର ମୁଣ୍ଡଦିଗରେ କିମ୍ବା ଗୁରୁଣ୍ଡିଆ ଦ୍ୱାରା ଆବଦ୍ଧ ବନ୍ଧ ହୋଇଥିଲେ ତାହାର ପୂର୍ବ କିମ୍ବା ଦକ୍ଷିଣ ହୁଡ଼ା ଉପରେ ଗୁରୁ ପୂଜା କରିଥାନ୍ତି । ପୂଜାବେଳେ ମାଟିଦେବତା, ପର୍ବତ ଦେବତା, ଜଳ ଦେବତା ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଗୋଟିଏ ଅଣ୍ଡା ଓ ଚାଉଳ ପୁଞ୍ଜି ଦେଇ ପୂଜାକରି ଉଭୟ ପକ୍ଷଙ୍କ ନାମରେ ମଦ ଥିପାଉଥାନ୍ତି ।

ଏହାପରେ ବୁଡ଼ାଳୀଦ୍ୱୟ ଉକ୍ତ ଜଳାଶୟରେ ସ୍ନାନସାରି ଓଦା ଲୁଗା ପିନ୍ଧି ଜଙ୍ଗଲକୁ ଯାଇ ଗୋଟିଏ ଲେଖାଏଁ ଶାଳଗଛ କାଟି ଆଣନ୍ତି

Digitized by PPRACHIN, SOA

ଏବଂ ତାହା ନେଇ ବନ୍ଦର ପାଣି ଭିତରେ ପୋତନ୍ତି । ଶାଳଖୁଣ୍ଟଗୁଡ଼ିକ ଏପରି ପୋତାଯାଏ ଯେପରି ସେ ଖୁଣ୍ଟପରେ ଏକ ହାତ ଉପରକୁ ବଳକା ରହେ । ଉକ୍ତ ଖୁଣ୍ଟର ଉପରିଭାଗକୁ ଗୋଲାକାର କରାଯାଇଥାଏ । ଉକ୍ତ ଖୁଣ୍ଟ କାଟିବା ପୂର୍ବରୁ କମ୍ବା ଆଣି ଗଛରେ, ପୋତିଲାବେଳେ ସାମାନ୍ୟ ପୂଜା କରାଯାଇଥାଏ । ଉକ୍ତ ଖୁଣ୍ଟ ପୋତାଗଲା ପରେ ଗୁରୁ ଖୁଣ୍ଟ ଅଗ୍ରଭାଗରେ ସେ ଟିଏ ଲେଖାଏଁ କାଞ୍ଜିଆ ଅଣ୍ଡା ରଖନ୍ତି ଏବଂ ଦୁଇ ବୁଡ଼ାଳୀଙ୍କ ମୁଣ୍ଡରେ ହାତଦେଇ ବୁଡ଼ିବା ପାଇଁ ନିର୍ଦ୍ଦେଶ ଦିଅନ୍ତି । ବୁଡ଼ାଳୀ ଦୁଇଜଣ ଏକାସାଙ୍ଗରେ ପୋତା ଯାଇଥିବା ଶାଳଖୁଣ୍ଟକୁ ଧରି ପାଣି ଭିତରେ ବୁଡ଼ନ୍ତି ଏବଂ ଗୁରୁ ଉଭୟ ଖୁଣ୍ଟ ଅଗ୍ରଭାଗରେ କ୍ଷୀର ଢାଳନ୍ତି । ବୁଡ଼ିଥିବା ବ୍ୟକ୍ତିଙ୍କ ମଧ୍ୟରୁ ଯେଉଁ ବ୍ୟକ୍ତି ପ୍ରଥମେ ପାଣିରୁ ବାହାରେ ଉକ୍ତ ପକ୍ଷ ଦୋଷୀ ସାବ୍ୟସ୍ତ ହୋଇଥାଏ । ସମୟେ ସମୟେ ନିର୍ଦ୍ଦୋଷୀ ପକ୍ଷର ବୁଡ଼ାଳୀ ପୋତା ଯାଇଥିବା ଶାଳକାଠ ଉପାଡ଼ି ଧରି ଉପରକୁ ବାହାରିଥାଏ ଏବଂ କେତେକ କ୍ଷେତ୍ରରେ ଗୁରୁ ଢାଳିଥିବା କ୍ଷୀର ଉକ୍ତ ବୁଡ଼ାଳୀର ମୁଣ୍ଡ, ଆଖି, ନାକରୁ ବହୁଥିବା ଦେଖା ଯାଇଥାଏ ।

ବୁଡ଼ିବା ପୂର୍ବରୁ ଉଭୟ ପକ୍ଷ ଗ୍ରାମବାସୀଙ୍କ ଦ୍ୱାରା ସ୍ଥିର କରାଯାଇଥିବା ମୁତାବକ କିଛି ଟଙ୍କା ପଣ ବାବଦକୁ ରଖିଥାନ୍ତି । ତାହା ପଚାଶ ଟଙ୍କାରୁ ଶହେ ଟଙ୍କାଯାଏ ହୋଇପାରେ । ଦୋଷୀ ପକ୍ଷର ପଣ ଟଙ୍କା ଗ୍ରାମ ପାଣ୍ଠିରେ ଜମାରହେ ଏବଂ ବିଜୟୀ ପକ୍ଷର ପଣ ଟଙ୍କା ଫେରସ୍ତ ଦିଆଯାଇଥାଏ ।

**୫. ଚାଉଳ ଚୁଞ୍ଚି ଖାଇ ସତ୍ୟତା ପ୍ରମାଣ କରିବା :—** ବାଲିଗୁଡ଼ା ସବ୍‌ଡିଭିଜନର ମହାସିଙ୍ଗ ଏବଂ କନ୍ଧମାଳ ସବ୍‌ଡିଭିଜନର ବଳସକୁମ୍ପାଠାରେ କନ୍ଧମାଳର ପ୍ରସିଦ୍ଧ ଦେବୀ ଶ୍ରୀ ଶ୍ରୀ ବରାଳଦେବୀ ଠାକୁରାଣୀଙ୍କ ଆସ୍ଥାନ ରହିଛି । ଉକ୍ତ ଦେବୀଙ୍କୁ କନ୍ଧମାନେ ଭୟ ଓ ଭକ୍ତି କରନ୍ତି । ତେଣୁ ସେହି ଅଞ୍ଚଳର ଚୋରି, ଗୁଣି ଇତ୍ୟାଦି ନିମନ୍ତେ ପ୍ରକୃତ ଦୋଷୀକୁ ଚିହ୍ନଟ କରିବା ପାଇଁ ଦେବୀଙ୍କ ପୂଜା ଚାଉଳରୁ କିଛି କିଛି ବାଦୀ ଓ ପ୍ରତିବାଦୀଙ୍କୁ ଖାଇବାକୁ ଦିଆଯାଇଥାଏ । ଦେବୀଙ୍କ ପୂଜା ନିମନ୍ତେ ବାଦୀଙ୍କଠାରୁ ଅନ୍ୟାନ୍ୟ ପୂଜା ଉପକରଣ ସହିତ ବଳି ନିମନ୍ତେ ଛେଳିଟିଏ ବି ଅଣା ଯାଇଥାଏ । ଦେବୀ ପୀଠରେ ଉଭୟଙ୍କ ନିମନ୍ତେ ପୂଜା କରାଯାଇ ଛେଳିବଳି ଦିଆଯାଏ ।

Digitized by PPRACHIN, SOA

ମୂନ ପରେ ଉଭୟପକ୍ଷ ବଳିରକ୍ତର ଟୀକା ଲଗାନ୍ତି ଓ ପୂଜା ହୋଇଥିବା ପୂର୍ଣ୍ଣି ଗୁଣ୍ଡଳ କଣ୍ଟି ଖାଇଥାନ୍ତି । ଉକ୍ତ ଗୁଣ୍ଡଳ ଖାଇବା ମୂନ୍ନର୍ ଦେବୀଙ୍କ ଆଗରେ ଶପଥ କରି କହିଥାନ୍ତି, "ମୁଁ ଯଦି ମିଛ କହୁଛି ମୋ ବଂଶ ବୁଡ଼-ଯାଉ ।" ଏପରି କହି ମୁଣ୍ଡିଆ ମାରି ଘରକୁ ଫେରନ୍ତି । ଦୋଷୀ ଚିହ୍ନଟ ନିମନ୍ତେ ସାତଦିନ ସମୟ ନିଆଯାଏ । ସାତଦିନ ମଧ୍ୟରେ ଯାହାର କ୍ଷତି ହୁଏ ତାହାକୁ ଦୋଷୀ ବୋଲି ସାବ୍ୟସ୍ତ କରି ଦଣ୍ଡ ଦିଆଯାଇଥାଏ ।

ସାରଣ୍ଡା ମେଃପା ନିମନ୍ତେ ଅନୁସୃତ ହେଉଥିବା କେତୋଟି ପଦ୍ଧତି ନିମ୍ନରେ ଦିଆଗଲା ।

**୧. ଖଟ ଦେବତା ପ୍ରୟୋଗ ଦ୍ୱାରା ସତ୍ୟତା ପ୍ରମାଣ କରିବା :—**

ଖଟ ଦେବତା ଦ୍ୱାରା ବି କନ୍ଧ ସମାଜରେ ଦୋଷୀ ଚିହ୍ନଟ କରିବା ପ୍ରଥା ପ୍ରଚଳିତ ଅଛି । ଜଣେ ଗୁଣିଆ ଏକ ଦଉଡ଼ିଆ ଖଟର ଚାରି ଖୁରାକୁ ଚାରିଜଣ ଯୁବକଙ୍କୁ ଧରାଇ ଉକ୍ତ ଖଟକୁ ପୂଜାକରି ମନ୍ତ୍ରପଢ଼ି ହଳଦୀ ଗୋଳା ଚାଉଳ ଖଟ ଉପରକୁ ଫିଙ୍ଗେ । ଏହାପରେ ଖଟ ଦେବତା ଖଟରେ ପ୍ରବେଶ କରି ଖଟ ଚାଲିବାକୁ ଆରମ୍ଭ କରେ । ଖଟ ଗୋଡ଼ ଧରିଥିବା ଯୁବକମାନେ ଖଟ ଯେଉଁ ଆଡ଼କୁ ଯିବାକୁ ଚାହୁଁଛି ସେହି ଦିଗକୁ ଚାଲିବାକୁ ବାଧ୍ୟ ହୁଅନ୍ତି । କାରଣ ଖଟ ଚାଲିବା ସହିତ ସେମାନେ ନ ଚାଲିବାର ଆପତ୍ତି ନ ଥାଏ । ଖଟ ଯାହା ଘରକୁ ଯାଏ ସେ ଦୋଷୀ ପ୍ରମାଣିତ ହୋଇଥାଏ ଏବଂ ଗ୍ରାମସଭା ଦ୍ୱାରା ସେ ଦଣ୍ଡିତ ହୋଇଥାଏ । ସାଧାରଣତଃ ଗୁଣି ଗାରେଡ଼ି, ନାହୁଣିଆ, ପାଙ୍ଗଣିଆ ଇତ୍ୟାଦି ପ୍ରୟୋଗ କରିଥିବା ବ୍ୟକ୍ତିକୁ ଚିହ୍ନଟ କରିବା ପାଇଁ ଏହି ପ୍ରଣାଳୀ ଅନୁସୃତ ହୋଇଥାଏ । ଏଇ ଲେଖକ ହରଭଙ୍ଗା ଥାନା ଅନ୍ତର୍ଗତ, ବାଙ୍କାର୍ଜୁନ ମୌଜାରେ ଖଟ ଦେବତା ପ୍ରୟୋଗ ଦ୍ୱାରା ଦୋଷୀ ଚିହ୍ନଟ ପ୍ରଣାଳୀ ପ୍ରାୟ ପନ୍ଦର ବର୍ଷ ତଳେ ଦେଖିଥିଲି ।

**୨. ବାଉଁଶ ଚୂପ ପ୍ରୟୋଗ ଦ୍ୱାରା ସତ୍ୟତା ପ୍ରମାଣ କରିବା :—**

କେତେକ କ୍ଷେତ୍ରରେ ବାଉଁଶ ଚୂପ ପ୍ରୟୋଗ କରାଯାଇ ଦୋଷୀ ଚିହ୍ନଟ କରାଯାଇଥାଏ । ଗୋଟିଏ କଞ୍ଚା ବାଉଁଶକୁ ଦୁଇଫାଳ କରି ଦୁଇଜଣ ଯୁବକଙ୍କୁ ଉକ୍ତ ବାଉଁଶର ଶେଷ ମୁଣ୍ଡକୁ ଦୁଇ ହାତରେ ଧରାଇ ଦିଆଯାଏ ।

Digitized by PPRACHIN, SOA

ଏହାପରେ ଗୁରୁ ପୂଜାକରି ଉକ୍ତ ବାଉଁଶ ଉପରେ ଚାଉଳ ଫିଙ୍ଗନ୍ତି । ଦୋଷୀ ନାମରେ ଚାଉଳ ଫିଙ୍ଗା ଗଲାବେଳେ ବାଉଁଶ ଦୁଇଟି ଲାଗିଯାଏ । ଫଳରେ ଦୋଷୀ ନିଜର ଦୋଷ ମାନିବାକୁ ବାଧ୍ୟ ହୋଇଥାଏ ।

ଗୁଣି ଗାରେଡ ପ୍ରୟୋଗ କରିଥିବା ବ୍ୟକ୍ତିକୁ ଚିହ୍ନଟ କରିବା ପାଇଁ ହୋ ସମାଜରେ ମଧ୍ୟ ଏହି ପଦ୍ଧତି ଅନୁସୃତ ହୋଇଥାଏ ।

ଦୋଷୀ ଚିହ୍ନଟ ନିମନ୍ତେ ଅବଲମ୍ବନ ହେଉଥିବା ନିମ୍ନୋକ୍ତ ପ୍ରଣାଳୀଗୁଡ଼ିକ ସାରଣ୍ଡା ଜଙ୍ଗଲ ମଧ୍ୟରେ ଅନୁଷ୍ଠିତ ।

୧. ଦେବୀ ପୀଠରେ ଧୀପ ବସାଇବା :—

ବଉଦ ସବଡ଼ିଭିଜନ ଅନ୍ତର୍ଗତ ପୁରୁଣା କଂଟକଣ୍ଠ ଦେବୀ ଭୈରବୀଙ୍କ ପୀଠରେ ଦୋଷୀର ଅମଙ୍ଗଳ ଉଦ୍ଦେଶ୍ୟରେ ତେଲଦୀପ ଜଳା ଯାଇଥାଏ । ଦୀପ ବସାଇବା ପରେ ପରେ ପ୍ରକୃତ ଅମଙ୍ଗଳ କମ୍ବା ଶାରୀରିକ ଅସୁସ୍ଥତା ଆକସ୍ମିକ ଭାବରେ ଘଟିଥାଏ । ସାଧାରଣତଃ ଚୋର ଧାଇଥିବା ଜିନିଷ ପାଇବା ପାଇଁ ଏବଂ ଯେଉଁ ସ୍ଥଳରେ ଚୋର ଧରାପଡ଼େ ନାହିଁ, ସେହି କ୍ଷେତ୍ରରେ ଦୀପ ବସାଯାଇଥାଏ । ଦୀପ ବସା ଯିବାପରେ କେତେକ କ୍ଷେତ୍ରରେ ଚୋର ସମସ୍ତଙ୍କ ଅଜଣାରେ ଚୋରିମାଲ ଫେରାଇ ଦେଇଥାଏ ।

୨. ଯଦି କୌଣସି ନିରପରାଧ ବ୍ୟକ୍ତି ଉପରେ ତାହାର କଥା ବିଗୁରକୁ ନ ନେଇ ଅପରାଧୀ ସାବ୍ୟସ୍ତ କରାଯାଏ, କମ୍ବା ପ୍ରକୃତ ଦୋଷୀ ବ୍ୟକ୍ତି ପ୍ରତିଶୋଧପରାୟଣ ହୋଇ ଅପରର କ୍ଷତିସାଧନ କରିବା ନିମନ୍ତେ ନିମ୍ନ ପ୍ରଣାଳୀ ଅବଲମ୍ବନ କରିଥାନ୍ତି । ଏହି ପଦ୍ଧତିରେ ଉପଯୁକ୍ତ ଗୁଣିଆ ଦ୍ୱାରା ନଈ କୂଳରେ କମ୍ବା ଘରେ ଏକ ପୂଜା କରାଯାଇ ଅପର ପକ୍ଷର ଅମଙ୍ଗଳ ନିମନ୍ତେ ପ୍ରାର୍ଥନା କରାଯାଏ । ଏହି ପୂଜାରେ ଗୋଟିଏ ଘୁଷୁରି, ନୂଆ ନାହା (ନୂଆ ମଦ ଘଡ଼)ରେ ମଦ, ଗୁଳିଶି ପ୍ରକାର ଚେର ମୂଳ ଓ ପିଠା ଲଡ଼ୁ ଇତ୍ୟାଦି ଦରକାର ହୋଇଥାଏ ।

୩. ଅନ୍ୟ ଏକ ପ୍ରଣାଳୀରେ ଲୁଣ, ବଣ ତୁଳସୀ ଡ଼ାଳ, କେନ୍ଦୁ ଡ଼ାଳ, ଧାତକୀଡ଼ାଳ, ଅଁଳା ଡ଼ାଳ, ମାଟି ଇତ୍ୟାଦି ଷୋଳ ପ୍ରକାର ଜିନିଷ ଏକ ନୂଆ ହାଣ୍ଡିରେ ରଖି ମନ୍ତ୍ର କରି ଟେକିଧରି କହିବ, "ଯଦି ତାହାର ଭୂଲ ହୋଇଥାଏ ସେ ଅମୁକ ହେଉ ।"

Digitized by PPRACHIN, SOA

ଜମି ବିବାଦ ନିମନ୍ତେ ଯଦି ଏହି ପ୍ରଣାଳୀରେ ସାରଡ଼ା ନିର୍ଣ୍ଣୟ କରାଯାଏ ତେବେ ଉକ୍ତ ହାଣ୍ଡି ବିବାଦୀୟ ଜମିରେ ପୋତି ଦିଆଯାଏ ।

୪. ପିଲାମାନେ ବନ୍ଧ୍ୟାଚରଣ ପକାଇଲା ପରି ଏକ ପ୍ରକ୍ରିୟାରେ ମଧ୍ୟ ଦୋଷୀ ଚିହ୍ନଟ କରାଯାଇଥାଏ । ଡାହାଣ ହାତର କାଣି ଆଙ୍ଗୁଠି ଜିଭରେ ଲଗାଇ ବାହାରେ ଘର ଉପରେ ପକ୍ଷର ଦେଖା ଛୁଇଁ ଏକଠାରୁ ଧାଡ଼ିଯାଏ ଗଣି ଅନ୍ୟର ପକ୍ଷରେ ଆଖି ଛୁଇଁ କହିବ ଯେ ତୁ ଯଦି ମିଛ କହୁଛୁ ତୋ ଆଖି ଫୁଟିଯାଉ ।

୫. କୁମ୍ଭାର ଚକ ଦ୍ୱାରା ବି କେତେକ କ୍ଷେତ୍ରରେ ଦୋଷୀକୁ ଚିହ୍ନଟ କରାଯାଇଥାଏ । ବିବାଦୀୟ ପକ୍ଷମାନଙ୍କ ପ୍ରକୃତ ଦୋଷୀକୁ ଜାଣିବା ପାଇଁ କଞ୍ଚା ଅରୁଆ ଚାଉଳ ପୂଜା ନିମନ୍ତେ ଆବଶ୍ୟକୀୟ ଦ୍ରବ୍ୟ କୁମ୍ଭାରକୁ ଦିଅନ୍ତି । କୁମ୍ଭାର ତାହାର ଚକକୁ ପୂଜାକରି ସେଥିରେ ଚାଉଳ ପକାଇ ଦୋଷୀର ଖଣ୍ଡ ହେଉ ବୋଲି କହି ଉକ୍ତ ଚକରେ ହାଣ୍ଡି ଗଢ଼େ । ଦୁଇ ତିନି ଦିନ ମଧ୍ୟରେ ଦୋଷୀର କଞ୍ଚାନା କଞ୍ଚି ଅନିଷ୍ଟ ହୋଇଥାଏ । ଏହା ପାପ କାର୍ଯ୍ୟ ହେଲା ବୋଲି ମନେ କରି ଆଜିକାଲି କୁମ୍ଭାରମାନେ ଏହା କରୁ ନଥିବା ଜଣାଯାଏ ।

୬. କୁଲା ବୁଲାଇ, ବୁଲାଇ କେତେକ କ୍ଷେତ୍ରରେ ଦୋଷୀ ଚିହ୍ନଟ କରାଯାଇଥାଏ । ଗୋଟିଏ କୁଲାର ପଛ ପାଖରେ କଇଁଚିଟିଏ ଖୋଲି ଲଗାଇ ଦିଆଯାଏ । ବାଦୀ ଓ ପ୍ରତିବାଦୀ ପକ୍ଷର ଦୁଇଜଣ ବ୍ୟକ୍ତି ସେମାନଙ୍କ ବାମ ହାତର ମଝି ଆଙ୍ଗୁଠି ଦ୍ୱାରା କଇଁଚିର ଧରିବା ପାଖକୁ ସ୍ପର୍ଶ କରି ବସନ୍ତି । ଗୁରୁ କୁଲାର ସାମନା ପାଖରେ ବସି ମନ୍ତ୍ରପଢ଼ି କୁଲା ଉପରକୁ ଚାଉଳ ଫିଙ୍ଗନ୍ତି । ଦୋଷୀର ନାମଧରି ଚାଉଳ ଫିଙ୍ଗିଲାବେଳେ ଦୋଷୀ ପକ୍ଷର ବ୍ୟକ୍ତି ଆଡ଼କୁ କୁଲା ବୁଲିଯାଏ ।

ଯଦି ଗୁଣି ଗାରେଡ଼ି ହୋଇଥାଏ, ଗୁଣି ହୋଇଥିବା ପଦରେ କୁଲା ବୁଲିଥାଏ । ଏହି ପ୍ରଣାଳୀରେ ଗୁଣିଆର ନାମ, ଗ୍ରାମ, ସାହି ଇତ୍ୟାଦି ନିର୍ଣ୍ଣୟ କରାଯାଇଥାଏ । ଏହି ଉପାୟରେ ରୋଗ ନିର୍ଣ୍ଣୟ, ଦେବତା କିମ୍ବା ପିତୃଲୋକଙ୍କ ଦୃଷ୍ଟି ନିର୍ଣ୍ଣୟ, ଗୁଣି ଗାରେଡ଼ି ବିଷୟରେ ଜଣାଯାଇଥାଏ ।

Digitized by PPRACHIN, SOA

ବେମାର ଓ ଦୁର୍ଘଟଣାର କାରଣ ଜାଣିବା ପାଇଁ କୁଆଁଙ୍ଗ ସମାଜରେ ବ କୁଲ ବୁଝାଇବା ପଦ୍ଧତି ପ୍ରଚଳିତ । ସେହି ସମାଜରେ ଗୁଣି ଗାରେଡ଼ ପ୍ରୟୋଗ କରିବା ବ୍ୟକ୍ତିଙ୍କୁ ଜାଣିବା ପାଇଁ ମଧ୍ୟ କୁଲ ବୁଝା ଯାଇଥାଏ ।

୭. ଭୁଇସିକା ନାମରେ ଏକ ଛୋଟ ଗଛ ଅଛି । ଓଡ଼ିଆରେ ଏହାକୁ ଦଣ୍ଡେଇ କହିଥାନ୍ତି । ଏହି ଗଛ ଚେଉଁରୁ ପାଞ୍ଚ ଫୁଟ ଯାଏ ଉଚ୍ଚ ହୋଇଥାଏ । ଖରାଦିନେ ଉକ୍ତ ଗଛର ଡାଳ, ପତ୍ର ଓ ଗଣ୍ଡି ଖଣ୍ଡ ଖଣ୍ଡ ହୋଇ ଛିଣ୍ଡି ପଡ଼ିଥାଏ । ଏଣୁ ଏହି ଗଛକୁ ଛୁଇଁ ଶପଥ କରାଯାଏ । ଶପଥ ଭଙ୍ଗ କଲେ ଉକ୍ତ ଗଛ ଛିଣ୍ଡିଲା ପରେ ଶପଥ ଭଙ୍ଗକାରୀ କୁଷ୍ଠ ବ୍ୟାଧିଗ୍ରସ୍ତ ହୋଇ ହାତ ଗୋଡ଼ ଛିଣ୍ଡିଯାଏ ବୋଲି ବିଶ୍ୱାସ ରହିଛି । ଏହା ଏକ ଭୟଙ୍କର ଶପଥଭାବେ ଗ୍ରହଣ କରାଯାଇଥାଏ ।

ଏହି ଗଛ ଛୁଇଁ ଶପଥ ଭଙ୍ଗ କରିବାପରେ ଯଦି ପ୍ରକୃତ ଫଳାଫଳ ଭୋଗ କରାଯାଏ, ତେବେ ଦୋଷ ମୁକ୍ତ ହେବା ପାଇଁ ଯେଉଁ ଗଛ ଛୁଇଁ ଶପଥ କରାଯାଇଥାଏ ଉକ୍ତ ଗଛର ଚେରି ପାଖରୁ ଏକ ହାତ ଲେଖାଏଁ ଖୋଳି ଗଛଟିକୁ ଉପାଡି ତେରିସହ ଉକ୍ତ ଗାତରେ ପୋତି ଦିଆଯାଏ ଏବଂ କିଛି ଅରୁଆ ଉକ୍ତ ଗାତରେ ପକାଇ କୁହାଯାଏ, "ଆମେ ଶପଥ ଭଙ୍ଗ କରି ପ୍ରତିଫଳ ପାଇଲୁ, ଏବେ ସେହି ପ୍ରତିଫଳ ଶାନ୍ତ ହେଉ ।" ଏପରି କହି ମୁଣ୍ଡିଆ ମାରିବାକୁ ହୁଏ ।

ଏହି ପ୍ରକ୍ରିୟାରେ ଶପଥ କରାଇ ବାଲିଗୁଡ଼ା ଥାନା ଗୃଞ୍ଜେଡ଼ ମୌଜାରେ ମଦରନ୍ଧା ଓ ମଦବିକ୍ରି ବନ୍ଦ କରାଯାଇ ପାରିଛି । ଏହି ପଦ୍ଧତିରେ ଶପଥ କରିବା ଗଣ୍ଡ ଓ କନ୍ଧ ସମାଜରେ ପ୍ରଚଳିତ ।

କନ୍ଧ ସମାଜରେ ଏହିପରି ବହୁ ଉପାୟରେ ଦୋଷୀକୁ ଚିହ୍ନଟ କରି ଗ୍ରାମସଭା ଦ୍ୱାରା ଦଣ୍ଡବିଧାନ କରାଯିବାର ପ୍ରଣାଳୀ ଅନୁସୃତ ହୋଇଥାଏ । ଏହାକୁ କେବଳ ଅନ୍ଧବିଶ୍ୱାସ କହି ଉଡ଼ାଇଦେଇ ହେବ ନାହିଁ । କାରଣ ଶପଥ ଭଙ୍ଗକାରୀ ପ୍ରତିଫଳ ଭୋଗୁ ବା ନ ଭୋଗୁ ଏହା ଦ୍ୱାରା ସାମାଜିକ ଆନୁଗତ୍ୟ ବୃଦ୍ଧି ପାଇଥାଏ । ସମସ୍ତ ସଭ୍ୟଙ୍କର ସାମାଜିକ ବ୍ୟବସ୍ଥା ପ୍ରତି ଭୟ ରହେ । ସମାଜରେ ଅପରାଧ ପ୍ରବଣତା ହ୍ରାସ ହୋଇଥାଏ ଏବଂ

Digitized by PPRACHIN, SOA

ସମ୍ପୋପର ସାମାଜିକ ସଦ୍‌ଭିତ୍ତ ରକ୍ଷା ଦିଗରେ ଏହା ସହାୟକ ହୋଇଥାଏ । ବ୍ୟକ୍ତି ମଧ୍ୟ ଆତ୍ମମର୍ଯ୍ୟାଦା ସଚେତନ ହୋଇଥାଏ ।

ଏହା ବ୍ୟକ୍ତିଗତ ବିବାଦ ଓ ଅଶାନ୍ତି ଯୋଗୁଁ ଥାନା, କଚେରୀକୁ ଯାଇ ଅଯଥା ଅର୍ଥ ଅପଚୟରୁ ରକ୍ଷା ମିଳିଥାଏ । ଏଣୁ କିଛି ପୂଜା ଦେଇ ସୁସ୍ଥଭାବରେ ବଞ୍ଚିରହିବାକୁ ଆଦିବାସୀ ସୁଖକର ମଣିଥାଏ । ଏଣୁ ସରକାରୀ ଆଇନ କାନୁନର ଆଶ୍ରୟ ନ ନେଇ ବିଭିନ୍ନ ଉପାୟରେ ଶପଥ କରାଇ ଦୋଷୀ ଚିହ୍ନଟ କରି ଗ୍ରାମସଭା ଦ୍ୱାରା ସମସ୍ତ ବିବାଦ ଓ ଅଶାନ୍ତିର ସମାଧାନ ନେବାକୁ ଆଦିବାସୀ ଶ୍ରେୟସ୍କର ମଣିଥାଏ ।



Digitized by PPRACHIN, SOA

# କନ୍ୟାଟଣା

କନ୍ଧ ସମାଜରେ ଧାଙ୍ଗଡ଼ୀ ଘରର ବ୍ୟବସ୍ଥା ରହିଛି । ଗ୍ରାମର ସମସ୍ତ ଅବିବାହିତା ଯୁବତୀ ରାତ୍ରରେ ଗୋଟିଏ ଘରେ ଶୋଇଥାନ୍ତି । ତାହାକୁ ଧାଙ୍ଗଡ଼ୀ ଘର (Deramitory) କୁହାଯାଏ । ଅନ୍ୟ ଗ୍ରାମର ଅବିବାହିତ ଯୁବକମାନେ ଆସି ଧାଙ୍ଗଡ଼ୀଘରେ ଶୋଇଥିବା ଯୁବତୀମାନଙ୍କୁ ଡାକି ନଚାଇ ଥାନ୍ତି । ଏହି ନାଚ ଧାଙ୍ଗଡ଼ୀନାଚ ଭାବରେ ସୁପରିଚିତ । ଏହି ନାଚରୁ ଯୁବକ ଯୁବତୀଙ୍କ ମଧ୍ୟରେ ପ୍ରେମ ସୃଷ୍ଟି ହୋଇଥାଏ ଏବଂ ପରସ୍ପର ବିବାହ କରିବାକୁ ସ୍ୱୀକୃତ ହୋଇଥାନ୍ତି ।

କନ୍ଧ ସମାଜର ବିଧି ଅନୁସାରେ ଯଦି ଅଭିଭାବକମାନଙ୍କ ଇଚ୍ଛାସାରରେ ବିବାହ କରିବାକୁ ହୁଏ, ତାହା ହେଲେ ଗଣ୍ଡି ବା କନ୍ୟାମୂଲ ଦେବାକୁ ହୋଇଥାଏ । ଏହି ଗଣ୍ଡିର ପରିମାଣ ବହୁତ ଅଟେ । ତେଣୁ କେତେକ ଯୁବକ ଗଣ୍ଡି ଦେଇ ବିବାହ କରିବାକୁ ଅସମର୍ଥ ହୋଇଥାନ୍ତି । ସେପରି କ୍ଷେତ୍ରରେ ଭଲ ପାଉଥିବା ଝିଅଟିକୁ ଟାଣିଆଣି ବିବାହ କରିଥାନ୍ତି । ଏପରି ବିବାହରେ ଗଣ୍ଡି ଦେବାକୁ ପଡ଼ି ନ ଥାଏ

ଏପରି ଟାଣିଆଣି ବିବାହ କରିବାକୁ କୁଇ ଭାଷାରେ "ବେଜା ନ ତାଃପା" କୁହାଯାଏ ।

ଯୁବକ ଯୁବତୀ ପରସ୍ପରକୁ ଭଲ ପାଇ ବିବାହ ପାଇଁ ରାଜି ଥିଲେ ମଧ୍ୟ ଅଭିଭାବକମାନେ ଯଦି ରାଜି ହୋଇ ନ ଥାନ୍ତି ସେପରି ସ୍ଥଳେ ବି କନ୍ୟାକୁ ଟାଣି ନେଇ ବିବାହ କରାଯାଇପାରେ ।

ପୂର୍ବରୁ ପ୍ରେମ ନ ଥାଇ ମଧ୍ୟ ଯଦି ଜଣେ ପୁରୁଷ ଜଣେ ସ୍ତ୍ରୀକୁ ବିବାହ କରିବାକୁ ଚାହେଁ, ତାକୁ ଟାଣିନେଇ ବିବାହ କରିପାରେ ।

ଟାଣିନେଇ ବିବାହ କରାଯିବା କନ୍ୟା ବିବାହିତ ବା ଅବିବାହିତ ଥିବାରେ କୌଣସି ସାମାଜିକ ପ୍ରତିବନ୍ଧକ ନାହିଁ ।

ବଉଦ ଅଞ୍ଚଳରେ ଉପରୋକ୍ତ ପ୍ରକାରେ କନ୍ୟା ଟାଣିବା ବ୍ୟତୀତ ଅନ୍ୟ ଏକ ପ୍ରଥା ବି ରହିଛି । କନ୍ୟାର ଘର ଦ୍ୱାର ମୁହଁରେ ପୁରୁଷ ନେଇ ଲୁଚାଟିଏ ଟାଣିଦିଏ ଏବଂ ଏହି ସଙ୍କେତ ଦ୍ୱାରା କନ୍ୟାଟଣା ହେଲା ବୋଲି ଧରି ନିଆଯାଏ ।

Digitized by PPRACHIN, SOA

କନ୍ୟାକୁ ତାର ନିଜ ଘରୁ, କୌଣସି ବନ୍ଧୁବାନ୍ଧବଙ୍କ ଘରୁ, ଜଙ୍ଗଲରୁ, ହାଟ, ବଜାର ବା ରାସ୍ତାରୁ କମ୍ବା ଗାଧୁଆଘାଟରୁ ପୁରୁଷ ଓ ତାହାର ସାଙ୍ଗମାନଙ୍କ ଦ୍ୱାରା ଜବରଦସ୍ତ ଟାଣି ନିଆଯାଏ । ସେହି ସମୟରେ କନ୍ୟା ନିକଟରେ ଉପସ୍ଥିତଥିବା ତାରି ସଙ୍ଗୀମାନେ କମ୍ବା ଅନ୍ୟ ପୁରୁଷମାନେ ହରଣକାରୀମାନଙ୍କୁ ସାଧ୍ୟ ମୁତାବକ ପ୍ରହାର କରି କନ୍ୟାକୁ ଛଡ଼ାଇ ନେବା ପାଇଁ ଚେଷ୍ଟା କରିଥାନ୍ତି । କିନ୍ତୁ ପୁରୁଷ ପକ୍ଷର ଏପରି ଅସ୍ୱାଭାବିକ କାର୍ଯ୍ୟ ନିମନ୍ତେ କନ୍ୟାପକ୍ଷ ଅବଗତ ନ ଥିବାରୁ ସଂଗଠିତ ପ୍ରତିରୋଧ କରି ପାରନ୍ତି ନାହିଁ । ଅପର ପକ୍ଷରେ ପୁରୁଷପକ୍ଷ ସଂଗଠିତ ଓ ସୁଚିନ୍ତିତ ଭାବରେ ପୂର୍ବରୁ ପ୍ରସ୍ତୁତ ହୋଇ ଆସିଥିବାରୁ ଅନାୟାସରେ କନ୍ୟାକୁ ଟାଣି ନେଇ ବିଜୟ ଗର୍ବରେ କଲକଲାରବ କରି ନିଜ ଗାଁକୁ ଫେରିଥାନ୍ତି ।

କନ୍ୟାଟଣା ହେବା ଖବର କନ୍ୟାର ପିତାମାତା ପାଇଲାପରେ ତାଁର ଅନ୍ୟ କେତେକ ସ୍ତ୍ରୀ ଓ ପୁରୁଷଙ୍କସହ ପୁରୁଷ ଘରକୁ ଯାଇ କନ୍ୟାକୁ ଫେରାଇବା ପାଇଁ ଦାବୀ କରନ୍ତି । ପୁରୁଷ ଘରର ଲୋକେ କନ୍ୟାକୁ ଫେରାଇବାକୁ ରାଜି ହୁଅନ୍ତି ନାହିଁ ଏବଂ ତାହା ବଦଳରେ ଅନ୍ୟ କଣ ଦରକାର ପଚାରିଥାନ୍ତି ।

ଏହାପରେ କନ୍ୟାପକ୍ଷ ମହତ ମାଗନ୍ତି । ପୁରୁଷ ପକ୍ଷରୁ ମହତ ବାବଦକୁ ଟଙ୍କା ଦେଇଥାନ୍ତି । ମହତ ଟଙ୍କା ଆକାରରେ ଟ ୫ ଙ୍କା (ପାଞ୍ଚ ଟଙ୍କା)ଠାରୁ ଟ ୨୫ ଙ୍କା (ପଚିଶି ଟଙ୍କା) ଯାଏ ଦିଆଯାଇଥାଏ । ମହତ ପାଇସାରିଲା ପରେ କନ୍ୟାପକ୍ଷ ପୁରୁଷ ଘରକୁ "ଡ୍ରପାପାଜ" (ଧୋକାଗ୍ରି ଆଣିବା ନିମନ୍ତେ ଘୁଷୁରୀ) ଓ ମଦ ମାଗିଥାନ୍ତି ବରପକ୍ଷ ତାହା ଦିଅନ୍ତି ।

ଡ୍ରପାପାଜ ଓ ମହତ ପାଇସାରିଲା ପରେ କନ୍ୟାପକ୍ଷରୁ ସମସ୍ତେ ନିଜ ଗାଁକୁ ଫେରିଯାଇଥାନ୍ତି । ଡ୍ରପାପାଜର ଘୁଷୁରୀଟି ମାରି ସଙ୍ଗରେ ଯାଇଥିବା ସମସ୍ତେ ବାଣ୍ଟିନେଇଥାନ୍ତି । ଯଦି ବରପକ୍ଷ କନ୍ୟାପକ୍ଷକୁ ରହିବାକୁ ବାଧ୍ୟ କରନ୍ତି ତେବେ ସେମାନେ ବରଘରେ ରାତିଏ ରହିଥାନ୍ତି । ବରପକ୍ଷ ଛେଳିମାରି, ଭୋଜିକରି କନ୍ୟା ପକ୍ଷକୁ ଆପ୍ୟାୟିତ କରିଥାନ୍ତି ।

Digitized by PPRACHIN, SOA

ଯଦି ବର ଓ କନ୍ୟାପକ୍ଷ ମଧ୍ୟରେ ସୁସମ୍ପର୍କ ରହେ ତେବେ "ସିଠେକାଲୁ" ବା ନିର୍ବନ୍ଧ ନିମନ୍ତେ ମଦ ଧରିଯାଇ ବରପକ୍ଷ ବଧିମୁତାଙ୍କ କନ୍ୟାମୂଲ ସ୍ଥିରକରି ବିବାହ କରିଥାନ୍ତି । ନଚେତ୍ ଝିଅଟି ଗଲା ଯାଉ ବୋଲି କନ୍ୟା ପିତାମାତା ତାହାସହ ସମ୍ପର୍କ ଛିନ୍ନ କରିଦେଇଥାନ୍ତି । ସେହିପରି କ୍ଷେତ୍ରରେ ପୁଅର ଅଭିଭାବକମାନେ ଡେରି ନ କରି "ବାକପୂଜା" କରି ବର କନ୍ୟାଙ୍କୁ ଯୌନସମ୍ପର୍କର ସୁଯୋଗ ଦେଇଥାନ୍ତି ।

କାଉଁ ଅଞ୍ଚଳରେ (ନିକାବାଲି ଅଞ୍ଚଳ) ବାକପୂଜା ବା ସେନଟୁଣୁ ପୂଜା (ଡେର୍କି ଗାଛରେ ପୂଜା) ପରେ ଯୌନ ସମ୍ପର୍କର ସୁଯୋଗ ବର କନ୍ୟାଙ୍କୁ ଦିଆଯାଇଥାଏ । ବଉଦ ଅଞ୍ଚଳରେ ଏହି ପୂଜାକୁ କୁଟୁଣିଦେଇ ପୂଜା କହନ୍ତି । ଅଠରମୁଠା (ଘୁ ଉଦୟଗିରି ଓ ରାଇକିଆ ଅଞ୍ଚଳ) ଅଞ୍ଚଳରେ ବାକପୂଜା କରାଯାଇ ନ ଥାଏ ।

ଟଣା ହୋଇଥିବା କନ୍ୟା ଯଦି ବିବାହିତା ହୋଇଥାଏ ବା ତାହାର ବିବାହ ସ୍ଥିର ହୋଇ ସାରିଥାଏ ତେବେ ବରପକ୍ଷ ଲୋକେ ଖବର ପାଇଲା ପରେ କନ୍ୟାକୁ ଟାଣିନେଇଥିବା ବରର ଘରେ ପହଞ୍ଚନ୍ତି । ସେମାନେ ବରର ସଂପର୍କୀୟ ହୋଇଥିଲେ ମଧ୍ୟ ଘର ଭିତରକୁ ନଯାଇ ଦାଣ୍ଡରେହିଁ ବସିଥାନ୍ତି । ଏପରିକି ଉକ୍ତ ବରର ଘର ଲୋକେ ଯଦି ଅନୁପସ୍ଥିତ ଥାନ୍ତି, ତେବେ ସେମାନେ ଆସିବାଯାଏ ବାହାରେ ରାନ୍ଧି ଖାଇ ସେହି ଦାଣ୍ଡରେହିଁ ରହିଥାନ୍ତି । ବର ପକ୍ଷର ଲୋକେ ଫେରିଲେ ସେମାନେ କନ୍ୟାକୁ ଫେରାଇ ଦେବା ପାଇଁ ଦାବୀ କରନ୍ତି । ବରପକ୍ଷ ଲୋକେ ଅରାଜି ହୋଇ କନ୍ୟା ବଦଳରେ ସେମାନଙ୍କୁ କଣ ଦରକାର ବୋଲି ପଚାରିଥାନ୍ତି ।

ପୂର୍ବ ବରପକ୍ଷର ଲୋକେ କନ୍ୟା ମିଳିବା ଆଶା ଛାଡ଼ି "ପୁଞ୍ଜୁ" (କ୍ଷତିପୂରଣ) ଦାବୀ କରନ୍ତି । କନ୍ୟା ଟାଣିଥିବା ବରପକ୍ଷ ପୁଞ୍ଜୁ ଦେଇଥାନ୍ତି । ପୁଞ୍ଜୁ ନିମନ୍ତେ ଟ ୧୬ ଙ୍କା (ଶୋହଳ ଟଙ୍କା) ଦିଆଯାଇଥାଏ । ପୁଞ୍ଜୁ ପାଇ ସାରିଲା ପରେ ପୂର୍ବ ବରପକ୍ଷର ଲୋକେ ନିଜ ଗାଁକୁ ଫେରି ଯାଇଥାନ୍ତି ।

(ପ୍ରଜାତନ୍ତ୍ର ପ୍ରଭାତ, ସେପ୍ଟେମ୍ବର ୧୯୮୯ରେ ପ୍ରକାଶିତ)



Digitized by PPRACHIN, SOA

# ବହୁପତ୍ନୀ ଗ୍ରହଣ ପ୍ରଥା

ଓଡ଼ିଶାର ୬୨ ଗୋଟି ଆଦିବାସୀ ସଂପ୍ରଦାୟ ମଧ୍ୟରେ ସଂଖ୍ୟା ଦୃଷ୍ଟିରୁ କନ୍ଧ ସଂପ୍ରଦାୟ ପ୍ରଥମ ସ୍ଥାନ ଅଧିକାର କରିଥାଏ । କନ୍ଧ ସମାଜରେ ବହୁପତ୍ନୀ ଗ୍ରହଣ ବିଧି ସମ୍ମତ ହେଲେ ମଧ୍ୟ ଖୁବ୍ କମ ବ୍ୟକ୍ତି ଏକାଧିକ ପତ୍ନୀ ଗ୍ରହଣ କରିଥାନ୍ତି । ଉକ୍ତ ଦମ୍ପତିଙ୍କୁ ସେମାନଙ୍କ କଥିତ ଭାଷା 'କୁଇ' ରେ "ଦଅଗେର ଡାଞ୍ଜା" ବା ଦ୍ୱିତୀୟ ବିବାହ କହିଥାନ୍ତି । ବହୁପତ୍ନୀ ଗ୍ରହଣ ନିମନ୍ତେ କେତେକ କାରଣ ମୁଖ୍ୟତଃ ଦାୟୀ ।

୧. ପତ୍ନୀ ଯଦି ଶାରୀରିକ ବିକଳାଙ୍ଗ କିମ୍ବା କୌଣସି କାରଣରୁ ଅଚଳ ହୋଇଯାଏ ।

୨. ବିବାହିତା ପତ୍ନୀ ବନ୍ଧ୍ୟା ବୋଲି ସନ୍ଦେହ କରାଯାଏ ।

୩. ପୂର୍ବରୁ ଅନ୍ୟ କୌଣସି ସ୍ତ୍ରୀ ସହିତ ପ୍ରେମ ସଂପର୍କ ଥିଲେ ।

୪. ବିବାହିତ ପତ୍ନୀ ସହିତ ମନୋମାଳିନ୍ୟ ହେଲେ ।

୫. ପତ୍ନୀ ଚିର ରୁଗ୍ଣା ହୋଇଗଲେ ।

ପ୍ରଥମ ଦୁଇ କାରଣ କିମ୍ବା ପଞ୍ଚମ କାରଣରୁ ଯଦି ଦ୍ୱିତୀୟ ବିବାହ କରାଯାଏ ତେବେ ପ୍ରଥମ ପତ୍ନୀର ସମ୍ମତି ନିଆଯାଇଥାଏ । କିନ୍ତୁ ତୃତୀୟ ଓ ଚତୁର୍ଥ କାରଣ ନିମନ୍ତେ ପ୍ରଥମ ପତ୍ନୀର ମତାମତ ନିଆଯାଇ ନଥାଏ ।

ଦ୍ୱିତୀୟ ବିବାହ ନିମନ୍ତେ କନ୍ୟାକୁ ଟାଣି ଆଣି ହେଉ କିମ୍ବା କନ୍ୟା ପିତାକୁ ସାମାଜିକ ବିଧି ଅନୁସାରେ ଗଣ୍ଡି (କନ୍ୟା ମୂଲ୍ୟ) ଦେଇ ହେଉ ବିବାହ କରାଯାଇଥାଏ । ପୁରୁଷ ନୂତନ ସ୍ତ୍ରୀକୁ ଆଣି ଘରେ ପୂରାଇଲା ପରେ ପ୍ରଥମ ସ୍ତ୍ରୀ ନିଜେ କିମ୍ବା ପିଲାଛୁଆ ଥିଲେ ତାହାଙ୍କୁ ଧରି ଘରୁ ବାହାରି ଯାଇ ଗାଁରେ ଥିବା (ଜାତିଭେଦ ନିର୍ବିଶେଷରେ) ତାର ସ୍ୱାମୀର ଭାଉଜ ସ୍ଥାନୀୟ ସ୍ତ୍ରୀମାନଙ୍କ ଆଗରେ କହେ ଯେ "ତା ସ୍ୱାମୀ ତା ଉପରେ ଆଉ ଗୋଟିଏ ସ୍ତ୍ରୀ ଆଣିଲା ।" ଉକ୍ତ ପୁରୁଷର ଭାଉଜମାନେ ତାହା ଶୁଣିଲା ପରେ ଖଣ୍ଡିଏ ଖଣ୍ଡିଏ ବାଡ଼ି ଧରି ଏକଜୁଟ ହୋଇ ଉକ୍ତ ପୁରୁଷର ଘରକୁ ଯାଇଥାନ୍ତି ।

ଏହି ସମୟରେ ପୁରୁଷର ସାଙ୍ଗ ଓ ସହଯୋଗୀମାନେ ନୂତନ ସ୍ତ୍ରୀକୁ ଲୁଚାଇବାର ଚେଷ୍ଟା କରିଥାନ୍ତି ଓ ପୁରୁଷଟି ମଧ୍ୟ ଲୁଚିବା ପ୍ରୟାସ କରିଥାଏ । ସମବେତ ସ୍ତ୍ରୀମାନେ ପ୍ରଥମେ ପୁରୁଷର ସହଯୋଗୀମାନଙ୍କୁ ଭେଟନ୍ତି ଓ ପଚାରିଥାନ୍ତି, "ଅମୁକ ଗୋଟିଏ ଉପରେ ଆଉ ଗୋଟିଏ ସ୍ତ୍ରୀ କାହିଁକି ଆଣିଲା ।" ଏପରି ପଚାରିବା ସଙ୍ଗେ ସଙ୍ଗେ ସେମାନଙ୍କୁ ପିଟିବା

Digitized by PPRACHIN, SOA

(ମାଉବେଦେହେଡା) ଆରମ୍ଭ କରିଦିଅନ୍ତି ଏବଂ ନୂତନ ସ୍ତ୍ରୀକୁ ଓ ପୁରୁଷକୁ ବି ଖୋଜି ଖୋଜି ବାହାର କରି ସେପରି ଦଣ୍ଡ ଚଗ୍ରିର ପିଟିଥାନ୍ତି । ମାଡ଼ ଖାଉଥିବା ଅବସ୍ଥାରେ ପୁରୁଷମାନେ କହନ୍ତି ଯାହା ହେବାର ଥିଲା ହେଲାଣି ତୁମର କଣ ଦରକାର କହ । ସ୍ତ୍ରୀମାନେ ଜୋରିମାନାସ୍ୱରୂପ ଖେଳି (ନାଣିପାଳ) ମାଗନ୍ତି ଓ ପ୍ରଥମ ସ୍ତ୍ରୀ ନିମନ୍ତେ ପାଣିଢ଼ାଳା ବା 'ସିରୁକାଥ୍‌କା ପାଇଁ ଦାବୀ କରିଥାନ୍ତି ଏବଂ ପୁରୁଷମାନେ ସେମାନଙ୍କ ଦାବୀକୁ ମାନିନେବା ପରେ ପିଟିବା ବନ୍ଦହୁଏ ।

ଦ୍ୱିତୀୟ ସ୍ତ୍ରୀ ବିବାହ କରୁଥିବା ପୁରୁଷଟି ଭାଇଜମାନଙ୍କୁ ଗୁଡ଼ଲ ଓ ତେଲ ଦେଇଥାଏ । ପୂର୍ବରୁ ଭାଇଜମାନେ ତାଙ୍କର ଯାହା ଗୋଟର ହେଉ ବଡ ଟେକ୍ଟିଏ ନେଇ ଯାଉଥିଲେ ଓ ପୁରୁଷ ତାହାର ଦାମ ଦେଉଥିଲା । ଆଜିକାଲି ସେପରି ହୁଏନାହିଁ ।

ପ୍ରଥମ ସ୍ତ୍ରୀ ନିମନ୍ତେ ସିରୁକାଥ୍‌କା କରିବା ପାଇଁ ଏକ ସୁନା ମାଳି ଅଭାବରେ ହଳଦିଆ ସୂତା ବା ଅଲିଭ ଦରକାର ହୋଇଥାଏ । ପ୍ରଥମ ସ୍ତ୍ରୀକୁ ଦାଣ୍ଡ ଦୁଆର ମୁହଁରେ ଠିଆ କରାଇ ସୁନାମାଳୀ ଦେଇ ପୁରୁଷ କଣ୍ଠି ପଦ ଚର୍ଚ୍ଚି ମାଠିଆଏ ପାଣି ତା ଉପରେ ଢ଼ାଳି ଦେଇଥାଏ । ନୂତନ ସ୍ତ୍ରୀ ମଧ୍ୟ ସେହିପରି ମାଠିଆଏ ପାଣି ପ୍ରଥମ ସ୍ତ୍ରୀ ଉପରେ ଢ଼ାଳିଥାଏ । ଏହି ପ୍ରକ୍ରିୟାକୁ 'ସିରୁକାଥ୍‌କା' କୁହାଯାଇଥାଏ । ଏହା ଦ୍ୱାରା ପୂର୍ବ ସମ୍ପର୍କ ଛିନ୍ନ ହେଲା ବୋଲି ଧରାଯାଏ । ପ୍ରଥମ ସ୍ତ୍ରୀର ସମ୍ମତି ଥାଇ ବିବାହ ହେଲେ ମାଉବେଦେହେଡା ବିଧି ତୁଲାଇବା ଭଳି କରାଯାଇଥାଏ । କିନ୍ତୁ ଅନ୍ୟ ସମସ୍ତ ପ୍ରକ୍ରିୟା ସମାନ ରହେ ।

ଏହାପରେ ପ୍ରଥମ ସ୍ତ୍ରୀ ତା ବାପା ଘରକୁ ଯାଇ ସମସ୍ତ ବିଷୟ କହିଥାଏ । ତାହାର ବାପା, ମା, ଭାଇ, ଭଉଣୀ ଓ ଗାଁର କଣ୍ଠି ସ୍ତ୍ରୀ ପୁରୁଷ ମଧ୍ୟ ଉକ୍ତ ପୁରୁଷ ଘରକୁ ଆସି ସେ କରିଥିବା ଅନ୍ୟାୟର କାରଣ ଜିଜ୍ଞାସା କରିଥାନ୍ତି ଓ ପୁରୁଷ ଶ୍ୱଶୁର ଘରର ପୁରୁଷମାନଙ୍କ ପାଇଁ ଘୁଷୁରି ଓ ସ୍ତ୍ରୀ-ମାନଙ୍କ ନିମନ୍ତେ ଛେଳି ଦେଇ ସେମାନଙ୍କୁ ସନ୍ତୁଷ୍ଟ କରିଥାନ୍ତି ଓ ଶାଳୀମାନଙ୍କୁ ପାଣି ଢ଼ାଳିଥାନ୍ତି ।

(ପ୍ରଗତିବାଦୀ ୧୫-୧-୯୦ରେ ପ୍ରକାଶିତ)



Digitized by PPRACHIN, SOA

# ବିଧବା ବିବାହ ଓ ଛାଡପତ୍ର

ବିଧବା ସ୍ତ୍ରୀଟିଏ ପୁନର୍ବିବାହ କରିବା ନିମନ୍ତେ କନ୍ଧ ସମାଜରେ କୌଣସି ବାଧା ନାହିଁ । ବିଧବା ସ୍ତ୍ରୀଲୋକକୁ କୁଇ ଭାଷାରେ "ବାଠା ଗାଠାରି" ଓ ବିଧବା ପୁରୁଷକୁ "ବାଠା ଗାଠାଞ୍ଜୁ" କୁହାଯାଇଥାଏ । ବିଧବା ସ୍ତ୍ରୀର ଯଦି ସନ୍ତାନ ନଥାଏ ସେ ବିଧବା ହେବା ପରେ ସ୍ୱାମୀର ଶୁଦ୍ଧକ୍ରିୟା ସମାପନାନ୍ତେ ବାପ ଘରକୁ ଚାଲିଯାଇଥାଏ ଏବଂ କନ୍ୟାପିତା ସାମାଜିକ ବିଧି ପ୍ରକାରେ କନ୍ୟା ମୂଲ୍ୟ ନେଇ ପୁଣି ଉକ୍ତ ସ୍ତ୍ରୀକୁ ପୁନର୍ବିବାହ ଦେଇଥାଏ । ଯଦି ଛୁଆଥାଏ ବିବାହବେଳେ ସଙ୍ଗରେ ନୂତନ ସ୍ୱାମୀ ଘରକୁ ନିଜ ସଙ୍ଗରେ ନେଇଯାଇଥାଏ । ଉକ୍ତ ସନ୍ତାନକୁ ଅପାମିଣ୍ଡା ବା ଆଗଚଲା ପିଲା କୁହାଯାଇଥାଏ । ଏପରି ବିବାହରେ ଆଡ଼ମ୍ବର ବହୁତ କମିଯାଇଥାଏ ।

କେତେକ କ୍ଷେତ୍ରରେ ବିଧବା ସ୍ତ୍ରୀଟି ନିଜ ସନ୍ତାନମାନଙ୍କ ସହିତ ମୃତ ସ୍ୱାମୀ ଘରେ ରହିଥାଏ । ଯଦି ଏପରି କ୍ଷେତ୍ରରେ ଅନ୍ୟ ପୁରୁଷ ସହିତ ଅବୈଧ ପ୍ରଣୟ ଗଢ଼ି ଉଠେ ଏବଂ ତାହା କ୍ରମଶଃ ସମସ୍ତଙ୍କ ଜ୍ଞାତସାରକୁ ଆସିଯାଏ ତେବେ ଉକ୍ତ ଅବୈଧ ପ୍ରେମକୁ ସାମାଜିକ ସ୍ୱୀକୃତି ଦେବା ନିମନ୍ତେ ଏକ ପନ୍ଥା ବି କନ୍ଧ ସମାଜରେ ରହିଛି ।

ଗ୍ରାମର କେତେକ ବ୍ୟକ୍ତି ଉକ୍ତ ସ୍ତ୍ରୀ ସହ ଅବୈଧ ପ୍ରଣୟରତ ପୁରୁଷ ଏକତ୍ର ଥିବା ଅବସ୍ଥାରେ ଘେରାଉ କରି ଧରନ୍ତି ଓ ଉକ୍ତ କୁକାର୍ଯ୍ୟ ନିମନ୍ତେ ପୁରୁଷକୁ ପ୍ରହାର କରିଥାନ୍ତି । ପୁରୁଷ ଓ ସ୍ତ୍ରୀ ନିଜ କୁକାର୍ଯ୍ୟ ନିମନ୍ତେ ଲଜ୍ଜିତ ହୋଇ ଚୁପ ରହନ୍ତି ।

ଏହି ଗୁପ୍ତ ପ୍ରଣୟ ବିଷୟ ଗ୍ରାମ ମୁଖିଆଠାରେ ଉପସ୍ଥାପନ କରାଯାଏ । ଗ୍ରାମ ମୁଖିଆ ଉଭୟଙ୍କୁ ଡ଼କାଇ ଉକ୍ତ ବିଷୟରେ ସତ୍ୟତା ଅନୁସନ୍ଧାନ କରନ୍ତି । ଯେହେତୁ ଗ୍ରାମର ଅନ୍ୟମାନଙ୍କ ନିକଟରେ ଗୁପ୍ତ ପ୍ରଣୟରତ ଥିବାବେଳେ ଧରାପଡ଼ିଥାନ୍ତି, ତେଣୁ ସମସ୍ତ ବିଷୟ ମାନିଯାନ୍ତି ଓ ପ୍ରାୟ ବିବାହ କରି ଏକତ୍ର ରହିବା ପାଇଁ ସମ୍ମତ ହୋଇଥାନ୍ତି ।

Digitized by PPRACHIN, SOA

ଅବୈଧ ପ୍ରଣୟ ଫଳରେ ଜାରଜ ପେନୁ (ମାଟି ଦେବତା) ଅବତୀର୍ଣ୍ଣ ହୋଇଥାନ୍ତି । ତେଣୁ ମାଟି ଦେବତାଙ୍କୁ ସନ୍ତୁଷ୍ଟ କରିବା ନିମନ୍ତେ ପୁରୁଷଠାରୁ "ଦାରଜ ନବଗା" ବା ଧରଣୀ ଦେବତାଙ୍କ ଗାଧୁଆ କରିବା ନିମନ୍ତେ ଘୁଷୁରି, କୁକୁଡ଼ା ଓ ମଦ ଗୁପ୍ତ ପ୍ରଣୟୀ ପୁରୁଷଠାରୁ ଦାବୀ କରାଯାଇଥାଏ । ଉକ୍ତ ପୁରୁଷ ଦାବୀ ଅନୁଯାୟୀ ସମସ୍ତ ଦ୍ରବ୍ୟ ଦେଇ ସ୍ତ୍ରୀକୁ ନିଜ ଘରକୁ ନେଇଯାଏ ।

ଉକ୍ତ ବିଧବାର ଯଦି ଶ୍ରେଷ୍ଠ ଛୁଆଥାଏ ସେ ତାହାକୁ ସଙ୍ଗରେ ଧରି ନୂତନ ସ୍ୱାମୀ ଘରକୁ ଯାଏ ଓ ଯଦି ଛୁଆ ବଡ ହୋଇଥାନ୍ତି ପୂର୍ବ ସ୍ୱାମୀଙ୍କ ଜ୍ଞାତିମାନଙ୍କ ହେପାଜତରେ ରଖାଯାଇଥାଏ । ବା ପୂର୍ବ ସ୍ୱାମୀର ଯେଉଁ ଛୁଆକୁ ସଙ୍ଗରେ ନେଇଯାଏ ତାହାକୁ ଅପାନୀଡ଼ା ବା ଆଗଚଲା ଛୁଆ କୁହାଯାଇଥାଏ ।

ନୂତନ ସ୍ୱାମୀ ଘରକୁ ମା ପୂର୍ବ ସ୍ୱାମୀଙ୍କର ଯେଉଁ ସନ୍ତାନ ନେଇଯାଇଥାଏ ତାହାର ଜନ୍ମିତ ପିତାର ସମ୍ପତ୍ତିରେ ଭାଗ ଅକ୍ଷୁର୍ଣ୍ଣ ରହେ । ନୂତନ ପିତାର ପୂର୍ବରୁ ଯଦି ପୁଅ ଥାଏ ତେବେ ଉକ୍ତ ପିତାର ସମ୍ପତ୍ତି ଦୁଇଭାଗ ହୁଏ । ପ୍ରଥମ ଭାଗ ପୂର୍ବ ସ୍ତ୍ରୀର ସନ୍ତାନ ଓ ଅନ୍ୟ ଭାଗଟି ନୂତନ ସ୍ତ୍ରୀର ପୁଅଙ୍କ ମଧ୍ୟରେ ଭାଗ ହୋଇଥାଏ । ସେଥିରେ ଆଗଚଲା ପୁଅର ମଧ୍ୟ ଭାଗ ରହିଥାଏ ।

ଯଦି ପୁରୁଷର ପୂର୍ବ ସ୍ତ୍ରୀ ମୃତ ହୋଇଥାଏ ତେବେ ପୂର୍ବ ସ୍ତ୍ରୀର ବାପ ଘରକୁ ଯାଇ ନାଣ୍ଡିକଣ୍ଠକାଲୁ ଥୋଇ ପ୍ରେତକୁ ଶାନ୍ତ କରନ୍ତି । ଯଦି ଉକ୍ତ ସ୍ତ୍ରୀର ବାପ ଘର ସହିତ ପୂର୍ବରୁ ମନୋମାଳିନ୍ୟ ଥାଏ ତେବେ ଶ୍ୱଶୁର ଘର ଗାଁ ବାଟରେ ନାଣ୍ଡିକଣ୍ଠକାଲୁ କରାଯାଇଥାଏ । ସ୍ତ୍ରୀ ବିଧବା ହୋଇ ପୁନର୍ବିବାହ କଲେ ବି ସେହିପରି ନାଣ୍ଡିକଣ୍ଠକାଲୁ କରାଯାଇଥାଏ ।

## ଛାଡପତ୍ର

କନ୍ଧ ସମାଜରେ ସ୍ତ୍ରୀ ପୁରୁଷ ମଧ୍ୟରେ ମନୋମାଳିନ୍ୟ ଘଟିଲେ ସ୍ତ୍ରୀ ତାହାର ବାପ ଘରକୁ ଚାଲିଯାଏ ଏବଂ ପୁନର୍ବାର ସ୍ୱାମୀ ଘରକୁ ଫେରେ ନାହିଁ । ସାଧାରଣତଃ ସ୍ତ୍ରୀମାନେ ସାଧାରଣ କଥାରେ ବି ସ୍ୱାମୀକୁ ତ୍ୟାଗ

Digitized by PPRACHIN, SOA

କର ବାପ ଘରକୁ ଚାଲିଯାଇଥାନ୍ତି । ସ୍ୱାମୀ ବାରମ୍ବାର ଡ଼ାକ ଗଲେ ମଧ୍ୟ "ଆଉ ତୋ ପାଖକୁ ଯିବ ନାହିଁ" ଇତ୍ୟାଦି କହି ପ୍ରତ୍ୟାଖ୍ୟାନ କରିଥାନ୍ତି । ଫଳରେ ସ୍ୱାମୀ ପକ୍ଷରୁ କିଛି ଲୋକ କନ୍ୟାର ଗାଁକୁ ଯାଇ ଗାଁ ମୁଖିଆଙ୍କ ନିକଟରେ ଗୁଡ଼ପଦ ନିମନ୍ତେ ମୌଖିକ ଆବେଦନ କରିଥାନ୍ତି ।

ଗ୍ରାମ ମୁଖିଆ କନ୍ୟାପିତା ଓ ବରପକ୍ଷକୁ ଏକ ନିର୍ଦ୍ଦିଷ୍ଟ ଦିନ ବିଚାର ନିମନ୍ତେ ସ୍ଥିର କରନ୍ତି । ଉକ୍ତ ଦିନ ଗାଁ ମୁଖିଆ, ଅନ୍ୟାନ୍ୟ ଭଦ୍ର ଲୋକ ଓ କନ୍ୟା ଓ ବରପକ୍ଷକୁ ନେଇ ଏକ ସଭା ବସେ । ଉକ୍ତ ସଭାରେ ବରପକ୍ଷ ପ୍ରଥମେ ଗୁଡ଼ପଦ ପ୍ରସ୍ତାବ ଉପସ୍ଥାପିତ କରନ୍ତି । ଗାଁ ମୁଖିଆ ବରକୁ ଏବଂ କନ୍ୟାକୁ ସେମାନଙ୍କ ମତାମତ ପଚାରନ୍ତି । ସାଧାରଣତଃ ବର କନ୍ୟାକୁ ନେବା ସପକ୍ଷରେ ଏବଂ କନ୍ୟା ବର ସହିତ ନଯିବା ପାଇଁ ମତ ଦେଇଥାନ୍ତି । ଏହାପରେ ଗୁଡ଼ପଦ କରିବାର କାରଣ ଜିଜ୍ଞାସା କରି କେଉଁ ପକ୍ଷର ଭୁଲ ଅଧିକ ନିର୍ଣ୍ଣୟ କରାଯାଏ । ଯେଉଁ ପକ୍ଷର ଭୁଲ ଅଧିକ ଥିବା ଜଣାଯାଏ ସେହିପକ୍ଷ ଅପର ପକ୍ଷକୁ ପାଞ୍ଚ ଟଙ୍କାଠାରୁ ପଚିଶ ଟଙ୍କାଯାଏ ମହତ ଦେବା ପାଇଁ ସଭା ନିଷ୍ପତ୍ତି ଦେଇଥାଏ । ଏହାପରେ କନ୍ୟା ପକ୍ଷକୁ ପୁଞ୍ଜି (କ୍ଷତିପୂରଣ) ଦାବୀ କରାଯାଏ ଓ କନ୍ୟାପକ୍ଷ ପୁଞ୍ଜି ବାବଦକୁ ଶୋହଳ ଟଙ୍କା ବରପକ୍ଷକୁ ଦେଇଥାନ୍ତି ।

ଏହାପରେ ବରପକ୍ଷ ଦେଇଥିବା କନ୍ୟାମୂଲ, ବିଭିନ୍ନ ସମୟରେ କନ୍ୟାପକ୍ଷୀୟ ବ୍ୟକ୍ତିମାନଙ୍କୁ ଦେଇଥିବା ଲୁଗାପଟା ଓ କନ୍ୟା ଘରକୁ ଗଲା-ବେଳେ ନେଇଥିବା ଜିନିଷର ମୂଲ୍ୟାୟନ ହୋଇଥାଏ । କନ୍ୟାକୁ ଦିଆଯାଇଥିବା ଅଳଙ୍କାର ଓ ଭୋଜି ଇତ୍ୟାଦିରେ ହୋଇଥିବା ଖର୍ଚ୍ଚ ମଧ୍ୟ ଏଥିସହିତ ହିସାବ ହୋଇଥାଏ । କନ୍ୟାପକ୍ଷରୁ ବର ଘରର ବିଭିନ୍ନ ସମୟରେ ଦିଆଯାଇଥିବା ଲୁଗାପଟା ଓ ବର ଘରକୁ ନେଇଯାଇଥିବା ଜିନିଷ ଇତ୍ୟାଦିର ମଧ୍ୟ ହିସାବ କରାଯାଇଥାଏ । ଉଭୟ ମୂଲ୍ୟାୟନ ମଧ୍ୟରୁ ବାଦଦେଇ ବଳକା ଟଙ୍କା ଯେଉଁ ପକ୍ଷର ଦେୟ ହୁଏ ତାହା ଫେରସ୍ତ ଦେବା ନିମନ୍ତେ ସଭା ନିର୍ଦ୍ଦେଶ ଦିଏ । ଉକ୍ତ ପକ୍ଷ ସଙ୍ଗେ ସଙ୍ଗେ ଉକ୍ତ ଦେୟ ଦେଇ ନପାରିଲେ ସଭା ପକ୍ଷରୁ ଏକ ଦିନ ନିର୍ଦ୍ଦିଷ୍ଟ କରାଯାଇ ଉକ୍ତ ଟଙ୍କା ଫେରାଇବା ପାଇଁ କୁହାଯାଏ । ଉକ୍ତ ନିର୍ଦ୍ଦିଷ୍ଟ ଦିନ ଦେୟ ପକ୍ଷ ଉକ୍ତ ଟଙ୍କା ଗ୍ରାମ ମୁଖ୍ୟଙ୍କଠାରେ ଦାଖଲ

Digitized by PPRACHIN, SOA

ଦେଇଥାନ୍ତି । ସଭା ଶେଷ ହେବା ପୂର୍ବରୁ କନ୍ୟା ଓ ବର ଏକ କୁଠାର ଦୁଇପାଖ ଧରି ଟାଣି ଛିଣ୍ଡାଇଥାନ୍ତି । ଏହା ଦ୍ୱାରା ବୈବାହିକ ସମ୍ପର୍କ ଛିନ୍ନ ହେଲା ବୋଲି ଧରାଯାଏ । ଏହାପରେ ମଦ ଖିଆଯାଇଥାଏ ଏବଂ ସଭା ଭଙ୍ଗ କରାଯାଏ ।

(ପ୍ରଗତିବାଦୀ ୧୫-୧-୯୦ରେ ପ୍ରକାଶିତ)



Digitized by PPRACHIN, SOA

# ଅପ ମୃତ୍ୟୁରେ ଶୁଦ୍ଧି କ୍ରିୟା

ହିନ୍ଦୁ ସମାଜରେ ଗ୍ରହଦୋଷ ଉପଶମ ନିମନ୍ତେ ପୂଜା, ହୋମ, ଦେବତା ମାନସିକ ଇତ୍ୟାଦି କରାଯାଇ ଥାଏ । ସେପରି କନ୍ଧ ସମାଜରେ ମଧ୍ୟ ଅପ ମୃତ୍ୟୁକୁ କୌଣସି ଅପ ଦେବତାର କୁଦୃଷ୍ଟିରୁ ଘଟିଥାଏ ବୋଲି ବିଶ୍ୱାସ କରାଯାଏ ଏବଂ ସେହି ଅପ ଦେବତାର କୁଦୃଷ୍ଟିର ପ୍ରଭାବରୁ ପରିବାରର ଅନ୍ୟମାନେ ମୁକ୍ତ ରହିବା ନିମନ୍ତେ "ସୁପାଡ଼ୁ ଉଃପା" ପାଳନ କରାଯାଇ ଥାଏ ।

ବାଘ, ଭାଲୁ, ହାତୀ ଇତ୍ୟାଦି ବନ୍ୟଜନ୍ତୁ ଦ୍ୱାରା ଆକ୍ରାନ୍ତ ହୋଇ, ସର୍ପାଘାତରେ, ପାଣିରେ ବୁଡ଼ି, ଗଛରୁ ପଡ଼ି, ଦଉଡ଼ି ଦେଇ କିମ୍ବା ଦୁର୍ଘଟଣାଜନିତ ଅପମୃତ୍ୟୁ ହେଲେ "ସୁପାଡ଼ୁ ଉଃପା" ପାଳନ କରାଯାଇ ଥାଏ । ଏପରି ଅପମୃତ୍ୟୁ ଘରେ ନହୋଇ ଗ୍ରାମ ବାହାରେ ହୋଇଥିଲେ ମୃତ ବ୍ୟକ୍ତି ନିମନ୍ତେ ତାହାର ଆତ୍ମୀୟ ସ୍ୱଜନମାନେ ସ୍ୱାଭାବିକ ଶୁଦ୍ଧି କ୍ରିୟା ପାଳନ କରିଥାନ୍ତି । ଏହା ବ୍ୟତୀତ କେତେକ ଲୋକଙ୍କର ବିଷ ଭୁଣ୍ଡ ବାଜିଲେ ବା ନିଶ୍ୱାସ ପଡ଼ିଲେ ସ୍ତ୍ରୀମାନେ ପ୍ରସବ କରି ପାରି ନଥାନ୍ତି । ଗୋରୁମାନେ ପେଟ ଫୁଲାଇ ମରିଥାନ୍ତି । କୁକୁଡ଼ା ଇତ୍ୟାଦି ଗୃହପାଳିତ ପ୍ରାଣୀ ମରିଥାନ୍ତି ବୋଲି ବିଶ୍ୱାସ କରାଯାଏ । କେତେକ ସ୍ଥଳରେ କଳା ହୋଇ ଆସୁଥିବା ଧାନ ଫସଲ ଧଳା ପାଲଟି ଯିବାର ମୂଳକାରଣ ଏହି ବିଷ ଭୁଣ୍ଡ ବା ନିଶ୍ୱାସ ବୋଲି କନ୍ଧମାନଙ୍କର ବିଶ୍ୱାସ ରହିଛି । କୌଣସି ବୃଦ୍ଧ ବା ବୃଦ୍ଧା ଯଦି କୌଣସି ଏକ ଘରୁ କିଛି ଦ୍ରବ୍ୟ ମାଗିବାକୁ ଯାଇ, ସେ ଘରେ ସେହି ଦ୍ରବ୍ୟ ଥାଇବି ନପାଏ ଓ ନିରାଶ ହୋଇ ଫେରେ ଏବଂ ଏ ଘରୁ ଲୁଣ ଟିକେ କି ଚୁଣ ଟିକେ ବି ମାଗିଲେ ମିଳିଲା ନାହିଁ ଇତ୍ୟାଦି କିଛି କହିଥାଏ ଓ ତା' ପରେ ପରେ ଯଦି ଉପରୋକ୍ତ ବିପଦ ମଧ୍ୟରୁ କୌଣସିଟି ଉକ୍ତ ଘରେ ବା ପରିବାର ମଧ୍ୟରେ ଘଟେ ତେବେ ଭୁଣ୍ଡ ବାଜିଛି ବା ନିଶ୍ୱାସ ବାଜିଛି ବୋଲି ବିଶ୍ୱାସ କରାଯାଏ । ଏଣୁ କୁଉଟା (ସତ୍ୟତା ଜାଣିବା ପ୍ରଣାଳୀ) ଦ୍ୱାରା ସତ୍ୟତା ଜାଣିବାକୁ ଚେଷ୍ଟା କରାଯାଏ । କୁଉଟାରେ ଯଦି ଭୁଣ୍ଡ ବାଜିବା ବା ନିଶ୍ୱାସ ବାଜିବା କଥା ଜଣାଯାଏ ତେବେ ବିପଦାକ୍ରାନ୍ତ ବ୍ୟକ୍ତିର ବାରିପଟେ "ସୁପାଡ଼ୁ ଉଃପା" କରାଯାଇ ଥାଏ ।

Digitized by PPRACHIN, SOA

ଅପ ମୃତ୍ୟୁରେ ମୃତ ବ୍ୟକ୍ତିର ଦେହକୁ ଗାଁକୁ ଅଣାଯାଇ ନଥାଏ । ବାହାରେ ବାହାରେ ଉକ୍ତ ଶବ ସତ୍କାର କରାଯାଇଥାଏ । ଶବକୁ ସ୍ପର୍ଶ କରିଥିବା ବ୍ୟକ୍ତିମାନେ "ସୁଡାଖୁଡ଼ୁ ଉଃପା" ପ୍ରଣାଳୀରେ ଶୁଦ୍ଧ ନହେବା ଯାଏ ଘରକୁ ଯାଇ ନଥାନ୍ତି । ଯଦି ମୃତବ୍ୟକ୍ତି ଗାଁରେ ଦଉଡ଼ି ଦେଇ ମରିଥାଏ, ସେ ମରିଥିବା ଘରଟିକୁ ଭାଙ୍ଗି ଦିଆଯାଇଥାଏ । ମଧ୍ୟ ପ୍ରଦେଶର ଅବୁଝ୍ ମାରିଆ ଆଦିବାସୀ ଗୋଷ୍ଠୀରେ ବାଘ ଖାଇ ମୃତ ହୋଇଥିବା ସ୍ଥାନରେ ମଧ୍ୟ ଏପରି ଶବଟିକୁ ଗାଁକୁ ଅଣା ନଯାଇ ସେହି ସ୍ଥାନରେ ପୋତି ଦିଆଯାଇଥାଏ । (୯)

ସୁଡାଖୁଡ଼ୁ ଉଃପା ପାଳନ କରିବା ନିମନ୍ତେ ଗ୍ରାମର ଆବାଳ-ବୃଦ୍ଧବନିତା ଜଣେ ପାଣ ଗୁରୁ (ପୁରୋହିତ)ଙ୍କ ସହିତ ନିକଟସ୍ଥ ନାଳ ବା ନଦୀକୁ ଯାଇଥାନ୍ତି । ବହି ଯାଇଥିବା ପାଣି ସ୍ରୋତ ଉପରେ ମୁଣ୍ଡିରେ ଦୁଇ ହାତ ଛଡ଼ାରେ ଦୁଇଟି କେନ୍ଦୁ ଖୁଣ୍ଟି ପୋତାଯାଏ । ଦୁଇ ଖୁଣ୍ଟରେ କଣ୍ଟେଇ କୋଳି ଡ଼ାଳ, ଭାଲିଆ ଡ଼ାଳ, ଈଶ୍ୱର ଜଟ ଓ କଣ୍ଟି ଡ଼ିବେଛୁଣ ବନ୍ଧାଯାଏ । ଦୁଇ ଖୁଣ୍ଟରେ ବନ୍ଧା ଯାଇଥିବା ଡାଳର ଅଗ୍ରଭାଗ ପୁଣି ଏକାଠି ବାନ୍ଧି ଦିଆଯାଏ । ଉକ୍ତ ଖୁଣ୍ଟିର ତଳ ଦିଗରେ ଅର୍ଥାତ୍ ପାଣି ବହି ଯାଉଥିବା ଦିଗରେ ସମସ୍ତ ଗ୍ରାମବାସୀଙ୍କୁ ଧାଡ଼ିବାନ୍ଧି ଠିଆ ହେବା ପାଇଁ ଗୁରୁ ନିର୍ଦ୍ଦେଶ ଦିଅନ୍ତି । ଧାଡ଼ିର ପ୍ରଥମରେ ଅପମୃତ୍ୟୁ ଲଭିଥିବା ବ୍ୟକ୍ତିଙ୍କ ଘରର ମୁଖ୍ୟ ବ୍ୟକ୍ତି ଠିଆ ହୁଅନ୍ତି । ତାହାଙ୍କ ପଛକୁ ଅନ୍ୟମାନେ ଠିଆ ହୁଅନ୍ତି । ସମସ୍ତେ ଠିଆ ହେଲା ପରେ କେନ୍ଦୁ ଖୁଣ୍ଟର ଉପର ପାଖରେ ରହି ଗୁରୁ କେନ୍ଦୁ ଖୁଣ୍ଟି ମୂଳରେ ହୁଉଳ ପୁଞ୍ଜି ଦେଇ ତା' ଉପରେ କାଞ୍ଜିଆ ଅଣ୍ଡାଟିଏ ରଖି ମନ୍ତ୍ର ପଢ଼ି ପୂଜା କରନ୍ତି ଓ ମଦ ଥିପାଇ ଥାନ୍ତି ।

ପୂଜା ସରିଲା ପରେ ଗୁରୁ ଏକ ଲଉ ଡ଼ଙ୍କାରେ ପାଣି' କାଣ୍ଡିଆ କୁଣ୍ଡା, ଜାମୁ ଗୁଳି, କେଉଁଡ଼ ଗୁଳି ପକାଇ କେନ୍ଦୁ ଡ଼ାଳ, ଭାଲିଆ ଡ଼ାଳ, କଣ୍ଟେଇ କୋଳି ଡ଼ାଳ, ଡିବେଛୁଣ ଓ ଈଶ୍ୱର ଜଟ ଏକାଠି ହାତରେ ଧରି ଉକ୍ତ ଡ଼ଙ୍କାରେ ସମସ୍ତ ଡ଼ାଳ ବୁଡ଼ାଇ ବୁଲି ବୁଲି ସମସ୍ତ ଗ୍ରାମବାସୀଙ୍କ ଉପରକୁ ଛିଞ୍ଚିଥାନ୍ତି । ଏହାକୁ ନିହିରେଇବା ବା ପବିତ୍ର କରିବା କୁହାଯାଇଥାଏ ।

Digitized by PPRACHIN, SOA

ଏହାପରେ ଗୁରୁ ଦୁଇ ଖଣ୍ଡ ମର୍ଚ୍ଚି ଦେଇ ଧାଡ଼ିର ସମସ୍ତ ବ୍ୟକ୍ତିଙ୍କୁ ନିରୀକ୍ଷଣ କରିଥାନ୍ତି । ଏହାଦ୍ୱାରା କାହାଠାରେ ଅପମୃତ୍ୟୁର ଲକ୍ଷଣ ବା "ସିଙ୍ଗାଲ" ଅଛି ସେ ଜାଣି ପାରନ୍ତି । କୌଣସି ବ୍ୟକ୍ତିଠାରେ ସିଙ୍ଗାଲ ଥିବା ଜାଣି ପାରିଲେ ଗୁରୁ ତାହା ପାଖକୁ ଧାଇଁଯାଇ ଶରୀରର ଯେଉଁ ସ୍ଥାନରେ ସିଙ୍ଗାଲ ଥାଏ ଉକ୍ତ ସ୍ଥାନକୁ ପାଟିରେ ଶୋଷି ରକ୍ତ ବାହାର କରି ଫିଙ୍ଗି ଦେଇଥାନ୍ତି । ଏହାଦ୍ୱାରା ଅପମୃତ୍ୟୁ ଦୋଷ ଦୂର ହୁଏ ବୋଲି ବିଶ୍ୱାସ କରାଯାଏ । ଯଦି ସିଙ୍ଗାଲ ଥିବା ସ୍ଥାନରୁ ଗୁରୁ ପାଟିରେ ଶୋଷି ରକ୍ତ ବାହାର କରି ନପାରନ୍ତି ଉକ୍ତ ବ୍ୟକ୍ତିକୁ ଧାଡ଼ିରୁ ବାହାର କରି ଦିଆଯାଏ ଏବଂ ତାହା ନିମନ୍ତେ ସ୍ୱତନ୍ତ୍ର ପ୍ରାୟଶ୍ଚିତର ବ୍ୟବସ୍ଥା କରାଯାଇଥାଏ । ଓଡ଼ିଶାର ଅନ୍ୟତମ ଆଦିବାସୀ ଗୋଷ୍ଠୀ ସଉରାମାନଙ୍କ ମଧ୍ୟରେ ବି ଏହି ପ୍ରଥା ପ୍ରଚଳିତ ଥିବା ଜଣାଯାଏ । (୨)

ସିଙ୍ଗାଲ ଦେଖା ଓ ବାହାର କରିବା ପ୍ରକ୍ରିୟା ଶେଷ ହେଲା ପରେ ଧାଡ଼ିରେ ଠିଆ ହୋଇଥିବା ସମସ୍ତଙ୍କୁ ଗୋଡ଼ ମେଲାଇ ଠିଆ ହେବା ନିମନ୍ତେ ଗୁରୁ ନିର୍ଦ୍ଦେଶ ଦିଅନ୍ତି । ଗୁରୁଙ୍କ ନିର୍ଦ୍ଦେଶ କାର୍ଯ୍ୟକାରୀ ହେଲା ପରେ ଗୁରୁ ପୂଜାଦ୍ରବ୍ୟ ଓ କେନ୍ଦୁଖୁଣ୍ଟ ଦୁଇଟି ଉପାଡ଼ ପାଣିରେ ଭସାଇ ଦିଅନ୍ତି । ଉକ୍ତ ଦ୍ରବ୍ୟ ଗୁଡ଼ିକ ସମସ୍ତଙ୍କ ଗୋଡ଼ ସନ୍ଧି ଦେଇ ତଳକୁ ଭାସି ଯାଇଥାଏ ଏବଂ ଭାସି ଗଲାବେଳେ ଯେପରି ଗୋଡ଼ରେ ନଲାଗେ ସେ ନିମନ୍ତେ ପ୍ରତ୍ୟେକେ ସତର୍କ ଥାନ୍ତି ।

ଏହି ବିଧି ଅନୁସାରେ ପ୍ରଥମେ ପାଣ ଗୁରୁ ଓ ପରେ କନ୍ଧ ଗୁରୁଙ୍କ ଦ୍ୱାରା ସମସ୍ତ ଗ୍ରାମବାସୀ ଶୁଦ୍ଧ ହୋଇଥାନ୍ତି ।

ଆଜିକାଲି କାହାରି ଅପମୃତ୍ୟୁ ହେଲେ ତାହା କୌଣସି ଦେବତାଙ୍କ କୁଦୃଷ୍ଟିରେ ହୋଇଛି ବୋଲି କନ୍ଧମାନେ ବିଶ୍ୱାସ କରନ୍ତି । ଏଣୁ ସେହି ଶବକୁ ଗାଁକୁ ନଆଣି ବାହାରେ ବାହାରେ ଶବ ସତ୍କାର କରାଯାଇଥାଏ । କାରଣ ଶବ ଗାଁକୁ ଆସିବା ଦ୍ୱାରା ଅପମୃତ୍ୟୁ ଦୋଷ ଗାଁ ଭିତରେ ବ୍ୟାପି ଯିବାର ଭୟ ଅଛି ବୋଲି ସେମାନଙ୍କ ବିଶ୍ୱାସ । ଏହା ସତ୍ତ୍ୱେ ବି ଗ୍ରାମ ଉପରେ କୌଣସି ଅପଦେବତାଙ୍କ କୁଦୃଷ୍ଟି ପଡ଼ିବାରୁ ଜଣକର ଅପମୃତ୍ୟୁ ହେଲା ଓ ଆଉ କେତେକଙ୍କର ବି ଅପମୃତ୍ୟୁ ହେବାର ସମ୍ଭାବନାକୁ ଏଡ଼ାଇ

Digitized by PPRACHIN, SOA

ଦିଆ ନଯାଇ ପାରେ ବୋଲି ବିଶ୍ୱାସ କରାଯାଇଥାଏ । ଏଣୁ ଉକ୍ତ ଦୋଷ ନିବାରଣ ନିମନ୍ତେ ଗାଁର ସମସ୍ତ ଅଧିବାସୀଙ୍କୁ ଶୁଦ୍ଧ ହେବାକୁ ପଡ଼ିଥାଏ । ଉକ୍ତ ଶୁଦ୍ଧ ହେବାର ପ୍ରଣାଳୀର ନାମ ହିଁ "ସୁପାଡ଼ି ଉଃପା" ।



**ସହାୟକ ଗ୍ରନ୍ଥ ସୂଚୀ :—**

1. Watts Nevile A The Half clad Tribes of Eastern India Calcufta 1970 P

2, Ibid P



Printed at the J. E. L. C. Press, Koraput-764020.

Digitized by PPRACHIN, SOA



## ଲେଖକ ପରିଚୟ

ଆଲୋଚକ ଶ୍ରୀଯୁକ୍ତ ରଘୁନାଥ ରଥଙ୍କ ଜନ୍ମ ଗଞ୍ଜାମ ଜିଲ୍ଲାର ଟାଙ୍ଗପୁର ଥାନା ଅନ୍ତର୍ଗତ ଶ୍ରୀକରପୁର ଗ୍ରାମରେ ୧୯୪୫ ମସିହା ଅଗଷ୍ଟ ମାସ ୨୩ ତାରିଖରେ । ପିତା ୰ କାଶିନାଥ ରଥ ଓ ମାତା ୰ ହେମଲତା ଦେବୀଙ୍କର ସେ ପ୍ରଥମ ସନ୍ତାନ । ଶ୍ରୀଯୁକ୍ତ ରଥଙ୍କର ଗବେଷଣା ଧର୍ମୀ ପ୍ରବନ୍ଧ, ଗଳ୍ପ, କବିତା ଓ ଶିଶୁ ସାହିତ୍ୟ ରଚନା କ୍ଷେତ୍ରରେ ମଧ୍ୟ ଦକ୍ଷତା ରହିଛି । ୧୯୫୭ରୁ ସେ ଲେଖା ଆରମ୍ଭ କରନ୍ତି । ସଂପ୍ରତି ଓଡ଼ିଶାର ବହୁ ପ୍ରତିଷ୍ଠିତ ପତ୍ରପତ୍ରିକାରେ ତାଙ୍କର ଅନେକ ଉପାଦେୟ ଲେଖା ପ୍ରକାଶିତ ।

ଶ୍ରୀଯୁକ୍ତ ରଥ ଜଣେ ଦକ୍ଷ ସଂଗଠକ ମଧ୍ୟ । ସଂପ୍ରତି ସେ ଓଡ଼ିଶାର ବହୁ ପତ୍ରପତ୍ରିକାର ସହଯୋଗୀ ସଂପାଦକ, ସଂଗଠକ, ସୌଜନ୍ୟ ସଂପାଦକ ଅଛନ୍ତି । ଏତଦ୍ ବ୍ୟତୀତ ସେ INTACH ନୂଆଦିଲ୍ଲୀ ଓ Folklore Academy ଭୁବନେଶ୍ୱରର ସଭ୍ୟ ଅଛନ୍ତି । ୧୯୮୯ରେ ସେ Inter National Seminar on Tribal Culture for Changing World ଏବଂ ୧୯୯୧ରେ National Seminar on Folklore Study in India ଓ National Seminar on Litereture by Childrenରେ ଯୋଗଦାନ କରି ପ୍ରବନ୍ଧ ଉପସ୍ଥାପନ କରିଛନ୍ତି ।

ତାଙ୍କ ସମ୍ପାଦନାରେ ୧୯୮୭ରେ 'ଓଡ଼ିଆ ଶିଶୁ ସାହିତ୍ୟ ପତ୍ରିକା ପରିଚୟ' ଓ ୧୯୮୯ରେ 'ପତ୍ର ପତ୍ରିକା ଓ ଲେଖକ ପରିଚୟ, ଫୁଲବାଣୀ-୧୯୮୯' ପୁସ୍ତକ ପ୍ରକାଶିତ ।

ସଂପ୍ରତି ଶ୍ରୀଯୁକ୍ତ ରଥ ଗୃହ ନିର୍ମାଣ ଓ ନଗର ଉନ୍ନୟନ ବିଭାଗରେ ଅବସ୍ଥାପିତ ଓ ଇତିହାସ, ଆଦିବାସୀ ସଂସ୍କୃତି ତଥା ଲୋକ ସାହିତ୍ୟ ବିଷୟରେ ଗବେଷଣାରତ ।

— ପ୍ରକାଶକ —

Digitized by PPRACHIN, SOA